# ସତ୍ୟାନୁସରଣ




ଶ୍ରୀ ଶ୍ରୀ ଠାକୁର ଅନୁକୂଳଚନ୍ଦ୍ର

ପ୍ରକାଶକ : ଶ୍ରୀ ଅନିନ୍ଦ୍ୟଦ୍ୟୁତି ଚକ୍ରବର୍ତ୍ତୀ
ସତ୍‌ସଙ୍ଗ ପବ୍ଲିଶିଂ ହାଉସ୍
ପୋ: ସତ୍‌ସଙ୍ଗ, ଦେଓଘର, ଝାଡ଼ଖଣ୍ଡ


ଦ୍ୱାଦଶ ସଂସ୍କରଣ : ଜାନୁଆରୀ ୧୯୯୯
ଚତୁର୍ଦ୍ଦଶ ସଂସ୍କରଣ : ମାର୍ଚ୍ଚ ୨୦୦୩
ଷଷ୍ଠଦଶ ସଂସ୍କରଣ : ଜୁଲାଇ ୨୦୧୫

ଅନୁବାଦକ :
ଶ୍ରୀ ଯତୀନ୍ଦ୍ର ମୋହନ ବସୁ

ମୁଦ୍ରଣ : ବେଙ୍ଗଲ ଫୋଟୋଟାଇପ କୋମ୍ପାନୀ
୪୬/୧, ରାଜାରାମମୋହନ ରାୟ ସରଣି
କଲକାତା-୭୦୦ ୦୦୯

ମୂଲ୍ୟ : ପାଞ୍ଚ ଟଙ୍କା

SATYANUSARAN (Odia)
by Sree Sree Thakur Anukul Chandra
16th edition July, 2015
Price - ₹ 5.00

# ସୂଚନା

ପରମପ୍ରେମମୟ ଶ୍ରୀଶ୍ରୀଠାକୁର ଅନୁକୂଳଚନ୍ଦ୍ରଙ୍କ ଅନ୍ୟତମ ପ୍ରିୟଭକ୍ତ ଅତୁଳ ଚନ୍ଦ୍ର ଭଟ୍ଟାଚାର୍ଯ୍ୟ ପାବନାରୁ ଅନ୍ୟତ୍ର ବଦଳି ହୋଇଯାଇଥାନ୍ତି । ବିରହ-ବିଚ୍ଛେଦକାତର ଭକ୍ତ ପ୍ରେମାଶ୍ରୁ ବିସର୍ଜନ ପୂର୍ବକ ପ୍ରାର୍ଥନା କଲେ-ନିରନ୍ତର ଦିବ୍ୟ ଭାବଧାରାରେ ଅନୁପ୍ରାଣିତ ହୋଇ ରହିବା ଭଳି ଶ୍ରୀହସ୍ତଲିଖିତ ଅମୃତ ନିର୍ଦ୍ଦେଶ । ବଙ୍ଗଳା ୧୩୧୬ ସାଲରେ ବାଇଶି-ବର୍ଷ ବୟସରେ ଶ୍ରୀଶ୍ରୀଠାକୁର ଏକ ରାତ୍ରିରେ ଲିପିବଦ୍ଧ କରିଦେଲେ ତାଙ୍କର ଅମୃତ-ନିଷ୍ୟନ୍ଦୀ ସ୍ୱତଃ-ଉତ୍ସାରିତ ବାଣୀ । ଭକ୍ତର ପ୍ରାର୍ଥନା ଓହ୍ଲାଇ ଆଣିଲା ପୃଥିବୀ ପୃଷ୍ଠରେ ମନ୍ଦାକିନୀର ପୁଣ୍ୟଧାରା ଯାହାକି ସଞ୍ଜୀବିତ କରି ରଖିବ ତାଙ୍କୁ ଏବଂ ଯୁଗ ଯୁଗ ଧରି ପ୍ରତ୍ୟେକଟି ମଣିଷକୁ ।

ବଙ୍ଗଳା ୧୩୨୫ ସାଲରୁ ମୁଦ୍ରିତ ହୋଇ 'ସତ୍ୟାନୁସରଣ' ବହନ କରି ଚାଲିଛି ସେହି ଶାଶ୍ୱତ ମହାବାଣୀ ।

ଏହି ଓଡ଼ିଆ ସଂସ୍କରଣ ମୂଳ ବଙ୍ଗଳା ପୁସ୍ତକର ଅନୁବାଦ ମାତ୍ର ।

ପ୍ରକାଶକ

ଅର୍ଥ, ମାନ, ଯଶ ଇତ୍ୟାଦି ପାଇବା ଆଶାରେ ମୋତେ ଠାକୁର ସଜାଇ ଭକ୍ତ ହୁଅ ନାହିଁ, ସାବଧାନ ହୁଅ-ଠକିଯିବ ; ତୁମର ଠାକୁରତ୍ୱ ଜାଗ୍ରତ ନ ହେଲେ କେହି ତୁମର କେନ୍ଦ୍ର ବି ନୁହଁନ୍ତି, ଠାକୁର ବି ନୁହଁନ୍ତି-ଫାଙ୍କିଦେଲେ ତାହାହିଁ ପାଇବ ।

ଭାରତର ଅବନତି **(degeneration)** ସେହି ସମୟରୁ ଆରମ୍ଭ ହୋଇଛି ଯେଉଁ ସମୟରୁ ଭାରତବାସୀଙ୍କ ପାଖରେ ଅମୂର୍ତ୍ତ ଭଗବାନ ଅସୀମ ହୋଇ ଉଠିଛନ୍ତି-ଋଷିଙ୍କୁ ବାଦ୍ ଦେଇ ଋଷିବାଦର ଉପାସନା ଆରମ୍ଭ ହୋଇଛି ।

ଭାରତ ! ଯଦି ଭବିଷ୍ୟତ କଲ୍ୟାଣକୁ ଆବାହନ କରିବାକୁ ଚାହ, ତେବେ ସମ୍ପ୍ରଦାୟଗତ ବିରୋଧ ଭୁଲି, ଜଗତର ପୂର୍ବପୂର୍ବ ଗୁରୁମାନଙ୍କ ପ୍ରତି ଶ୍ରଦ୍ଧାସମ୍ପନ୍ନ ହୁଅ-ଆଉ ତୁମର ମୂର୍ତ୍ତ ଓ ଜୀବନ୍ତ ଗୁରୁ ବା ଭଗବାନଙ୍କ ପ୍ରତି ଆସକ୍ତ **(attached)** ହୁଅ,-ଏବଂ ସେହିମାନଙ୍କୁହିଁ ସ୍ୱୀକାର କର ଯେଉଁମାନେ ତାଙ୍କୁ ଭଲପାଆନ୍ତି । କାରଣ, ପୂର୍ବବର୍ତ୍ତୀଙ୍କୁ ଅଧିକାର କରିହିଁ ପରବର୍ତ୍ତୀଙ୍କର ଆବିର୍ଭାବ ।

# ସତ୍ୟାନୁସରଣ

ସର୍ବପ୍ରଥମ ଆମ୍ଭମାନଙ୍କୁ ଦୁର୍ବଳତା ବିରୁଦ୍ଧରେ ଯୁଦ୍ଧ କରିବାକୁ ହେବ । ସାହସୀ ହେବାକୁ ହେବ, ବୀର ହେବାକୁ ହେବ । ପାପର ଜ୍ୱଳନ୍ତ ପ୍ରତିମୂର୍ତ୍ତି ଏହି ଦୁର୍ବଳତା । ତଡ଼, ଯେତେ ଶୀଘ୍ର ପାର, ଏହି ରକ୍ତ ଶୋଷଣକାରୀ ଅବସାଦ ଉତ୍ପାଦକ **Vampire*** କୁ । ସ୍ମରଣ କର ତୁମେ ସାହସୀ, ସ୍ମରଣ କର ତୁମେ ଶକ୍ତିର ତନୟ, ସ୍ମରଣ କର ତୁମେ ପରମପିତାଙ୍କ ସନ୍ତାନ । ଆଗେ ସାହସୀ ହୁଅ, ଅକପଟ ହୁଅ ତେବେ ଜଣାଯିବ ତୁମର ଧର୍ମରାଜ୍ୟରେ ପଶିବାର ଅଧିକାର ଜନ୍ମିଛି ।

---

* ଭ୍ୟାମ୍ପାୟାର **ଏକ ଜାତୀୟ ବାଦୁଡ଼ି ; ଏମାନେ ନିର୍ବିବାଦରେ ଘୁମନ୍ତ ଜୀବଜନ୍ତୁମାନଙ୍କର ରକ୍ତ ଶୋଷଣ କରିଥା'ନ୍ତି ।**

ଏତେ ଟିକିଏ ଦୁର୍ବଳତା ଥିଲେ ମଧ୍ୟ ତୁମେ ଠିକ୍‌ଠିକ୍ ଅକପଟ ହୋଇ ପାରିବ ନାହିଁ; ଆଉ, ଯେତେଦିନ ତୁମର ମନ-ମୁହଁ ଏକ ନ ହେଉଛି, ସେତେଦିନ ତୁମର ମଳିନତା ଦେହରେ ହାତ ବି ପଡ଼ିବ ନାହିଁ ।

ମନ-ମୁହଁ ଏକ ହୋଇଗଲେ ଆଉ ଭିତରେ ମଇଳା ଜମି ପାରେନାହିଁ-ଗୁପ୍ତ ଆବର୍ଜନା ଭାଷାରେ ଭାସିଉଠେ । ପାପ ଯାଇ ତା ଭିତରେ ବସା ବାନ୍ଧି ପାରେନାହିଁ ।

ହଟିଯିବାଟା ବରଂ ଦୁର୍ବଳତା ନୁହେଁ, କିନ୍ତୁ ଚେଷ୍ଟା ନ କରିବା ହିଁ ଦୁର୍ବଳତା । ତୁମେ କୌଣସି କିଛି କରିବାକୁ ପ୍ରାଣପଣେ ଚେଷ୍ଟା କରି ମଧ୍ୟ ଯଦି ବିଫଳମନୋରଥ ହୁଅ, କ୍ଷତି ନାହିଁ । ତୁମେ ଛାଡ ନାହିଁ, ଏହି ଅମ୍ଳାନ ଚେଷ୍ଟାହିଁ ତୁମକୁ ମୁକ୍ତି ଆଡ଼କୁ ନେଇଯିବ ।

ଦୁର୍ବଳ ମନ ଚିରକାଳହିଁ ସନ୍ଦିଗ୍‌ଧ,-ସେମାନେ କଦାପି ନିର୍ଭର କରିପାରନ୍ତି ନାହିଁ । ବିଶ୍ୱାସ ହରାଇଛନ୍ତି-ତେଣୁ ପ୍ରାୟ ଗୁଗ୍‌ଣ, କୁଟିଳ, ଇନ୍ଦ୍ରିୟପରବଶ

ହୋଇପଡ଼ନ୍ତି । ସେମାନଙ୍କ ନିକଟରେ ସାରା ଜୀବନଟା ଜ୍ୱାଳାମୟ । ଶେଷରେ ଅଶାନ୍ତିରେ ସୁଖ-ଦୁଃଖ ଡୁବିଯାଏ,- ସୁଖ କ'ଣ, ଦୁଃଖ କ'ଣ କହିପାରନ୍ତି ନାହିଁ ; କହିଲେ ହୁଏତ କହନ୍ତି 'ବେଶ୍', ତା ମଧ୍ୟ ଅଶାନ୍ତି ; ଅବସାଦରେ ଜୀବନ କ୍ଷୟ ହୋଇଯାଏ ।

ଦୁର୍ବଳ ହୃଦୟରେ ପ୍ରେମଭକ୍ତିର ସ୍ଥାନ ନାହିଁ । ପରର ଦୁର୍ଦ୍ଦଶା ଦେଖି, ପରର ବ୍ୟଥା ଦେଖି, ପରର୍ ମୃତ୍ୟୁ ଦେଖି ନିଜର ଦୁର୍ଦ୍ଦଶା, ବ୍ୟଥା ବା ମୃତ୍ୟୁର ଆଶଙ୍କା କରି ଭାଙ୍ଗିପଡ଼ିବା, ଝାଉଁଳି ପଡ଼ିବା ବା କାନ୍ଦି ଆକୁଳ ହେବା-ସେ ସବୁ ଦୁର୍ବଳତା । ଯେଉଁମାନେ ଶକ୍ତିମାନ୍, ସେମାନେ ଯାହା ବି କରନ୍ତୁ, ସେମାନଙ୍କର ନଜର କିନ୍ତୁ ନିରାକରଣ ଦିଗରେ ; ଯେପରି ସେସବୁ ଅବସ୍ଥାରେ ଆଉ କେହି ବିଧ୍ୱସ୍ତ ନ ହୁଅନ୍ତି, ପ୍ରେମର ସହିତ ତାହାର ଉପାୟ ଚିନ୍ତା କରିବା-ବୁଦ୍ଧଦେବଙ୍କର ଯାହା ହୋଇଥିଲା । ଏହାହିଁ ହେଉଛି ସବଳ ହୃଦୟର ଦୃଷ୍ଟାନ୍ତ ।

ତୁମେ କୁହନା ତୁମେ ଭୀରୁ, କୁହନା ତୁମେ

କାପୁରୁଷ, କୁହନା ତୁମେ ଦୁରାଶୟ । ପିତାଙ୍କ ଆଡ଼କୁ ନଜର କର, ଆବେଗଭରେ କୁହ-ହେ ପିତା, ମୁଁ ତୁମରି ସନ୍ତାନ ; ମୋର ଆଉ ଜଡ଼ତା ନାହିଁ, ଆଉ ଦୁର୍ବଳତା ନାହିଁ, ମୁଁ ଆଉ କାପୁରୁଷ ନୁହେଁ, ମୁଁ ଆଉ ତୁମକୁ ଭୁଲି ନରକ ଆଡ଼କୁ ଦୌଡ଼ିଯିବି ନାହିଁ, ଆଉ ତୁମର ଜ୍ୟୋତି ଆଡ଼କୁ ପଛ କରି 'ଅନ୍ଧକାର' 'ଅନ୍ଧକାର' ବୋଲି ଚିତ୍କାର କରିବି ନାହିଁ ।

* * *

ଅନୁତାପ କର ; କିନ୍ତୁ ସ୍ମରଣ ରଖ ଯେପରି ପୁନରାୟ ଅନୁତପ୍ତ ହେବାକୁ ନ ପଡ଼େ ।

ଯେତେବେଳେ ତୁମର କୁକର୍ମ ପାଇଁ ତୁମେ ଅନୁତପ୍ତ ହେବ, ସେତେବେଳେ ପରମପିତା ତୁମକୁ କ୍ଷମା କରିବେ, ଆଉ କ୍ଷମା ପାଇଲେ ହିଁ ବୁଝିପାରିବ, ତୁମ ହୃଦୟରେ ପବିତ୍ର ସାନ୍ତ୍ୱନା ଆସୁଛି, ଆଉ ତାହା ହେଲେହିଁ ତୁମେ ବିନୀତ, ଶାନ୍ତ ଓ ଆନନ୍ଦିତ ହେବ ।

ଯେ ଅନୁତପ୍ତ ହୋଇ ମଧ୍ୟ ପୁନରାୟ ସେହିପ୍ରକାର ଦୁଷ୍କର୍ମରେ ରତ ହୁଏ, ବୁଝିବାକୁ ହେବ ସେ ସତ୍ୱରହିଁ ଅତ୍ୟନ୍ତ ଦୁର୍ଗତିରେ ପତିତ ହେବ ।

କେବଳ ମୁହେଁ ମୁହେଁ ଅନୁତାପ କରିବା ଅନୁତାପ ନୁହେଁ, ତାହା ଆହୁରି ଅନ୍ତରରେ ଅନୁତାପ ଆସିବାର ଅନ୍ତରାୟ । ପ୍ରକୃତ ଅନୁତାପ ଆସିଲେ ତାହାର ସମସ୍ତ ଲକ୍ଷଣହିଁ ଉଣାଅଧିକେ ପ୍ରକାଶ ପାଏ ।

* * *

ଜଗତରେ ମଣିଷ ଯେତେ-ଯାହା ଦୁଃଖ ପାଏ ତାହାର ଅଧିକାଂଶ ହିଁ କାମିନୀ-କାଞ୍ଚନ ପ୍ରତି ଆସକ୍ତିରୁ ଆସେ, ସେ ଦୁଇଟା ପାଖରୁ ଯେତିକି ଦୂରେଇ ରହିବ ସେତିକି ମଙ୍ଗଳ ।

ଭଗବାନ ଶ୍ରୀଶ୍ରୀରାମକୃଷ୍ଣଦେବ ସମସ୍ତଙ୍କୁ ବିଶେଷ ଭାବରେ କହିଛନ୍ତି, କାମିନୀ-କାଞ୍ଚନ ପାଖରୁ ତଫାତ୍-ତଫାତ୍—ଖୁବ୍ ତଫାତ୍ ରୁହ ।

କାମିନୀଠାରୁ କାମ ବାଦ୍ ଦେଲେହିଁ ସେ ମା ହୋଇପଡ଼ନ୍ତି । ବିଷ ଅମୃତ ହୋଇଗଲା । ଆଉ ମା କେବଳ ମା—କାମିନୀ ନୁହେଁ ।

'ମା' ଶେଷରେ 'ଗୀ' ଦେଇ ଭାବିଲେହିଁ ସର୍ବନାଶ ।

ସାବଧାନ ! ମା'କୁ ମାଗୀ ଭାବି ମରନାହିଁ ।

ପ୍ରତ୍ୟେକଙ୍କର ମା-ହିଁ ଜଗଜ୍ଜନନୀ । ପ୍ରତ୍ୟେକ ଝିଅହିଁ ନିଜ ମାଆର ବିଭିନ୍ନ ରୂପ, ଏହିପରି ଭାବିବାକୁ ହୁଏ ।

ମାତୃଭାବ ହୃଦୟରେ ପ୍ରତିଷ୍ଠିତ ନ ହେଲେ ସ୍ତ୍ରୀଲୋକକୁ ଛୁଇଁବା ଅନୁଚିତ—ଯେତେ ଦୂରେଇ ରହିପାର ସେତେ ଭଲ ; ଏପରିକି ମୁଖଦର୍ଶନ ନ କରିବା ଆହୁରି ଭଲ ।

ମୋର କାମକ୍ରୋଧାଦି ଗଲା ନାହିଁ, ଗଲା ନାହିଁ-ବୋଲି ଚିତ୍କାର କଲେ କେବେହେଲେ ସେଗୁଡ଼ିକ ଯାଏ ନାହିଁ । ଏପରି କର୍ମ, ଏପରି ଚିନ୍ତା, ଅଭ୍ୟାସ କରି ନେବାକୁ ହେବ ଯହିଁରେ କାମକ୍ରୋଧାଦିର ଗନ୍ଧ ବି ନ ଥିବ—ମନ ଯାହାଦ୍ୱାରା ସେ-ସବୁ ଭୁଲିଯିବ ।

ମନରେ କାମ-କ୍ରୋଧାଦିର ଭାବ ନ ଆସିଲେ କିପରି ତାହା ପ୍ରକାଶ ପାଇବ ? ଉପାୟ— ଉଚ୍ଚତର ଉଦାରଭାବରେ ନିମଜ୍ଜିତ ରହିବା ।

ସୃଷ୍ଟିତତ୍ତ୍ୱ, ଗଣିତବିଦ୍ୟା, ରସାୟନଶାସ୍ତ୍ର ଇତ୍ୟାଦିର ଆଲୋଚନାରେ କାମ-ରିପୁର ଦମନ ହୁଏ ।

କାମିନୀ-କାଞ୍ଚନ ସମ୍ବନ୍ଧୀୟ ଯେ କୌଣସି ରକମର ଆଲୋଚନା ହିଁ ସେଥିପ୍ରତି ଆସକ୍ତି ଆଣି ଦେଇପାରେ । ସେ-ସବୁ ଆଲୋଚନାରୁ ଯେତେ ଦୂରେଇ ରହିପାରିବେ ସେତେ ଭଲ ।

* * *

ସଙ୍କୋଚହିଁ ଦୁଃଖ, ଏବଂ ପ୍ରସାରଣହିଁ ସୁଖ । ଯହିଁରେ ହୃଦୟରେ ଦୁର୍ବଳତା ଆସେ, ଭୟ ଆସେ-ତହିଁରେହିଁ ଆନନ୍ଦର ଅଭାବ-ଆଉ ତାହାହିଁ ଦୁଃଖ ।

ଗ୍ରହିବାଟା ନ ପାଇବାହିଁ ଦୁଃଖ । କିଛି ଗ୍ରହ ନାହିଁ । ସବୁ ଅବସ୍ଥାରେ ରାଜି ଥାଅ, ଦୁଃଖ ତୁମର କ'ଣ କରିବ ?

ଦୁଃଖ କାହାରି ପ୍ରକୃତିଗତ ନୁହେଁ, ତାକୁ ଇଚ୍ଛା କରିଲେହିଁ ତଡ଼ି ଦିଆଯାଇପାରେ ।

ପରମପିତାଙ୍କ ନିକଟରେ ପ୍ରାର୍ଥନା କର—'ତୁମର ଇଚ୍ଛାହିଁ ମଙ୍ଗଳ ; ମୁଁ ଜାଣେ ନା, କେଉଁଥିରେ ମୋର ମଙ୍ଗଳ

ହେବ । ମୋ ଭିତରେ ତୁମର ଇଚ୍ଛାହିଁ ପୂର୍ଣ୍ଣ ହେଉ ।' ଆଉ, ସେଥିପାଇଁ ତୁମେ ରାଜି ଥାଅ—ଆନନ୍ଦରେ ରହିବ, ଦୁଃଖ ତୁମକୁ ସ୍ପର୍ଶ କରିବ ନାହିଁ ।

କାହାରି ଦୁଃଖର କାରଣ ହୁଅନା, କେହି ତୁମର ଦୁଃଖର କାରଣ ହେବେ ନାହିଁ ।

ଦୁଃଖ ବି ଏକ ରକମ ଭାବ, ସୁଖ ବି ଏକ ରକମ ଭାବ । ଅଭାବର ବା ଗ୍ରହିବାର ଭାବଟାହିଁ ଦୁଃଖ । ତୁମେ ଜଗତର ହଜାର କରି ମଧ୍ୟ ଦୁଃଖ ନଷ୍ଟ କରିପାରିବ ନାହିଁ—ଯେ ପର୍ଯ୍ୟନ୍ତ ତୁମ ହୃଦୟରୁ ସେହି ଅଭାବର ଭାବଟାକୁ କାଢ଼ି ନ ନେଇଛ । ଆଉ, ଧର୍ମହିଁ ତାହା କରିପାରେ ।

* * *

ଯଦି ସାଧନାରେ ଉନ୍ନତି ଲାଭ କରିବାକୁ ଗ୍ରହ, ତେବେ କପଟତା ତ୍ୟାଗ କର ।

କପଟ ବ୍ୟକ୍ତି ଅନ୍ୟ ନିକଟରୁ ସୁଖ୍ୟାତିର ଆଶାରେ ନିଜକୁ ନିଜେ ପ୍ରବଞ୍ଚନା କରେ, ଅଳ୍ପ ବିଶ୍ୱାସ ଯୋଗୁଁ ଅନ୍ୟର

ପ୍ରକୃତ ଦାନରୁ ମଧ୍ୟ ପ୍ରବଞ୍ଚିତ ହୁଏ ।

ତୁମେ ଲକ୍ଷ ଗଳ୍ପ କର, କିନ୍ତୁ ପ୍ରକୃତ ଉନ୍ନତି ନ ହେଲେ ତୁମେ ପ୍ରକୃତ ଆନନ୍ଦ କଦାପି ଲାଭ କରିପାରିବ ନାହିଁ ।

କପଟାଶ୍ରୟୀର ମୁହଁର କଥା ସଙ୍ଗେ ଅନ୍ତରର ଭାବ ବିକଶିତ ହୁଏ ନାହିଁ, ସେଥିପାଇଁ ଆନନ୍ଦର କଥାରେ ମଧ୍ୟ ମୁହଁରେ ନିରସତାର ଚିହ୍ନ ଦୃଷ୍ଟ ହୁଏ ; କାରଣ ମୁହଁ ଖୋଲିଲେ କ'ଣ ହେବ, ହୃଦୟରେ ଭାବର ସ୍ଫୂର୍ତ୍ତି ହୁଏନାହିଁ ।

ଅମୃତମୟ ବାରି କପଟୀ ନିକଟରେ ତିକ୍ତ ଲବଣମୟ, କୂଳକୁ ଯାଇ ମଧ୍ୟ ତାର ତୃଷା ନିବାରିତ ହୁଏ ନାହିଁ ।

ସରଳ ବ୍ୟକ୍ତି ଊର୍ଦ୍ଧ୍ୱଦୃଷ୍ଟିସମ୍ପନ୍ନ ଗୃଧ୍ରକ ପରି । କପଟୀ ନିମ୍ନଦୃଷ୍ଟିସମ୍ପନ୍ନ ଶାଗୁଣା ପରି । ଛୋଟହୁଅ, କିନ୍ତୁ ଲକ୍ଷ୍ୟ ଉଚ୍ଚ ହେଉ ; ବଡ଼ ଏବଂ ଉଚ୍ଚ ହୋଇ ନିମ୍ନଦୃଷ୍ଟିସମ୍ପନ୍ନ ଶାଗୁଣା ପରି ହେବାରେ ଲାଭ କ'ଣ ?

କପଟୀ ହୁଅନାହିଁ । ନିଜେ ଠକାମୀରେ ପଡ଼ନାହିଁ କି ଅନ୍ୟକୁ ଠକାଅ ନାହିଁ ।

* * *

ଏହା ଖୁବ୍‌ହିଁ ସତ୍ୟ କଥା ଯେ, ମନରେ ଯେତେବେଳେହିଁ ଅପରର ଦୋଷ ଦେଖିବାର ପ୍ରବୃତ୍ତି ଆସିଛି ସେତେବେଳେ ସେହି ଦୋଷ ନିଜ ଭିତରେ ଆସି ବସା ବାନ୍ଧିଛି । ତତ୍‌କ୍ଷଣାତ୍ କାଳବିଳମ୍ବ ନ କରି ସେହି ପାପପ୍ରବୃତ୍ତିକୁ ଭାଙ୍ଗି ଚୁରି ଓଲେଇ ସଫା କରିଦେଲେ ଯାଇ ନିସ୍ତାର, ନଚେତ୍ ସବୁ ନଷ୍ଟ ହୋଇଯିବ ।

ତୁମର ନଜର ଯଦି ଅନ୍ୟର କେବଳ କୁ-ହିଁ ଦେଖେ, ତେବେ ତୁମେ କେବେହେଲେ କାହାରିକୁ ଭଲପାଇ ପାରିବ ନାହିଁ । ଆଉ, ଯେ ସତ୍ ଦେଖିପାରେ ନା ସେ କଦାପି ସତ୍ ହୁଏନାହିଁ ।

ତୁମର ମନ ଯେତେ ନିର୍ମଳ ହେବ, ତୁମର ଚକ୍ଷୁ ସେତେ ନିର୍ମଳ ହେବ, ଆଉ ଜଗତଟା ତୁମ ନିକଟରେ ନିର୍ମଳ ହୋଇ ଭାସି ଉଠିବ ।

**ତୁମେ ଯାହାହିଁ ଦେଖ ନା କାହିଁକି, ଅନ୍ତରର ସହିତ ସର୍ବାଗ୍ରେ ତାର ଭଲଟିକକ ଦେଖିବାକୁ ଚେଷ୍ଟା କର, ଆଉ ଏହି ଅଭ୍ୟାସ ତୁମେ ମଜ୍ଜାଗତ କରିପକାଅ ।**

ତୁମର ଭାଷା ଯଦି କୁତ୍ସା-କଳଙ୍କଜଡ଼ିତ ହୋଇଥାଏ, ଅପରର ସୁଖ୍ୟାତି କରି ନ ପାରେ, ତେବେ ଯେପରି କାହାରି ପ୍ରତି କୌଣସି ମତାମତ ପ୍ରକାଶ ନ କରେ । ଆଉ, ମନେ-ମନେ ତୁମେ ନିଜ ସ୍ୱଭାବକୁ ଘୃଣା କରିବାକୁ ଚେଷ୍ଟା କର, ଏବଂ ଭବିଷ୍ୟତରେ କୁତ୍ସା-ନରକ ତ୍ୟାଗ କରିବାକୁ ଦୃଢ଼-ପ୍ରତିଜ୍ଞ ହୁଅ ।

ପରନିନ୍ଦା କରିବା **ମାନେ ହିଁ** ପରର ଦୋଷ କୁଢ଼ାଇ **ନେଇ** ନିଜେ କଳଙ୍କିତ ହେବା ; ଆଉ, ପରର ସୁଖ୍ୟାତି କରିବାର ଅଭ୍ୟାସଦ୍ୱାରା ନିଜର ସ୍ୱଭାବ ଅଜ୍ଞାତସାରରେ ଭଲ ହୋଇପଡ଼େ ।

ତାହାବୋଲି କୌଣସି ସ୍ୱାର୍ଥବୁଦ୍ଧି ନେଇ ଅନ୍ୟର ସୁଖ୍ୟାତି କରିବା ଠିକ୍ ନୁହେଁ । ସେ ତ ଖୋସାମତ ।

ସେ-କ୍ଷେତ୍ରରେ ମନ-ମୁହଁ ପ୍ରାୟ ଏକ ରହେ ନାହିଁ । ତାହା କିନ୍ତୁ ବଡ଼ ଖରାପ, ଆଉ ତହିଁରେ ନିଜର ସ୍ୱାଧୀନ ମତପ୍ରକାଶ କରିବାର ଶକ୍ତି ହଜିଯାଏ ।

* * *

ଯାହା-ଉପରେ ଯାହାକିଛି ସବୁ ତିଷ୍ଠି ରହିଛି ତାହାହିଁ ଧର୍ମ, ଆଉ ସେ-ହିଁ ପରମପୁରୁଷ ।

ଧର୍ମ କେବେହେଲେ ବହୁ ହୁଏ ନା, ଧର୍ମ ଏକ, ଆଉ ତାର କୌଣସି ପ୍ରକାର ନାହିଁ ।

ମତ ବହୁତ ହୋଇପାରେ, ଏପରି କି ଯେତେ ମଣିଷ ସେତେ ମତ ହୋଇପାରେ, କିନ୍ତୁ ତାହାବୋଲି ଧର୍ମ ବହୁତ ହୋଇପାରେ ନାହିଁ ।

ହିନ୍ଦୁଧର୍ମ, ମୁସଲମାନଧର୍ମ, ଖ୍ରୀଷ୍ଟିୟାନଧର୍ମ, ବୌଦ୍ଧଧର୍ମ ଇତ୍ୟାଦି କଥା ମୋ ମତରେ ଭୁଲ, ବରଂ ସେ ସବୁଗୁଡ଼ିକ ମତ ।

କୌଣସି ମତ ସହିତ କୌଣସି ମତର ପ୍ରକୃତ-ପକ୍ଷରେ କୌଣସି ବିରୋଧ ନାହିଁ, ଭାବର ବିଭିନ୍ନତା, ପ୍ରକାରଭେଦ—ଗୋଟିଏକୁ ନାନା ପ୍ରକାରରେ ଏକରୂପେ ଅନୁଭବ !

ସବୁ ମତ ହିଁ, ସାଧନା ବିସ୍ତାର ପାଇଁ, ତେବେ ତାହା ନାନାପ୍ରକାରେ ହୋଇପାରେ ; ଆଉ ଯେତିକି ବିସ୍ତାର ହେଲେ ଯାହା ହୁଏ ତାହାହିଁ ଅନୁଭୂତି, ଜ୍ଞାନ । ତେଣୁ ଧର୍ମ ଅନୁଭୂତିର ଉପରେ ।

* * *

ଯଦି ଭଲ ଗ୍ଵହ ତେବେ ଜ୍ଞାନାଭିମାନ ଛାଡ, ସମସ୍ତଙ୍କ କଥା ଶୁଣ ; ଆଉ, ଯାହା ତୁମ ହୃଦୟର ବିସ୍ତାରରେ ସାହାଯ୍ୟ କରେ, ତାହାହିଁ କର ।

ଜ୍ଞାନାଭିମାନ ଜ୍ଞାନର ଯେତେ ଅନ୍ତରାୟ ଆଉ କୌଣସି ରିପୁ ସେତେ ନୁହେଁ ।

ଯଦି ଶିକ୍ଷା ଦେବାକୁ ଗ୍ଵହ ତେବେ କେବେହେଲେ

ଶିକ୍ଷକ ହେବାକୁ ଗ୍ରହ ନାହିଁ । ମୁଁ ଶିକ୍ଷକ, ଏହି ଅହଙ୍କାରହିଁ କାହାରିକୁ ଶିଖିବାକୁ ଦିଏ ନାହିଁ ।

ଅହଂକୁ ଯେତିକି ଦୂରରେ ରଖିବ ତୁମର ଜ୍ଞାନର ବା ଦର୍ଶନର ସୀମା ସେତିକି ବିସ୍ତାର ହେବ ।

ଅହଂଟା ଯେତେବେଳେ ମିଳାଇଯାଏ, ଜୀବ ସେତେବେଳେ ହିଁ ସର୍ବଗୁଣସମ୍ପନ୍ନ-ନିର୍ଗୁଣ ହୁଏ ।

* * *

ଯଦି ପରୀକ୍ଷକ ସାଜି ଅହଙ୍କାର ନେଇ ସଦ୍‌ଗୁରୁ କିମ୍ବା ପ୍ରେମୀ ସାଧୁଗୁରୁଙ୍କୁ ପରୀକ୍ଷା କରିବାକୁ ଯାଅ ତେବେ ତୁମେ ତାଙ୍କଠି କେବଳ ତୁମକୁହିଁ ଦେଖିବ, ଠକି ଆସିବ ।

ସଦ୍‌ଗୁରୁଙ୍କୁ ପରୀକ୍ଷା କରିବାକୁ ହେଲେ ତାଙ୍କ ନିକଟକୁ ସଂକୀର୍ଣ୍ଣ-ସଂସ୍କାରବିହୀନ ହୋଇ, ଭଲ-ପାଇବାର ହୃଦୟ ନେଇ, ଦୀନ ଏବଂ ଯେତେଦୂର ସମ୍ଭବ ନିରହଙ୍କାର ହୋଇ ଯାଇ ପାରିଲେ ତାଙ୍କ ଦୟାରେ ସନ୍ତୁଷ୍ଟ ହୋଇପାରିବ ।

ତାଙ୍କୁ ଅହଂ ରୂପକ କଷ୍ଟିପଥର ଦ୍ୱାରା କଷାଯାଏ ନାହିଁ, କିନ୍ତୁ ସେ ପ୍ରକୃତ ଦୀନତାରୂପକ ମେଣ୍ଢା ଶିଙ୍ଗରେ ଖଣ୍ଡବିଖଣ୍ଡ ହୁଅନ୍ତି ।

ହୀରା ଯେପରି କୋଇଲା ପ୍ରଭୃତି ଆବର୍ଜନାରେ ଥାଏ, ଉତ୍ତମରୂପେ ପରିଷ୍କାର ନ କଲେ ତାହାର ଜ୍ୟୋତି ବାହାରେ ନାହିଁ, ସେ ମଧ୍ୟ ସେହିପରି ସଂସାରରେ ଅତି ସାଧାରଣ ଜୀବପରି ରହିଥାନ୍ତି, କେବଳ ପ୍ରେମର ପ୍ରକ୍ଷାଳନରେହିଁ ତାଙ୍କର ଦୀପ୍ତିରେ ଜଗତ୍ ଉଦ୍ଭାସିତ ହୁଏ । ପ୍ରେମୀହିଁ ତାଙ୍କୁ ଧରିପାରେ । ପ୍ରେମୀର ସଙ୍ଗ କର, ସତ୍ସଙ୍ଗ କର, ସେ ଆପଣାଛାଏଁ ପ୍ରକଟ ହେବେ ।

ଅହଙ୍କାରୀକୁ ଅହଙ୍କାରୀ ପରୀକ୍ଷା କରିପାରେ । ଗଳିତ-ଅହଂକୁ କିପରି ସେ ଜାଣିପାରିବ ? ତା'ନିକଟରେ ଗୋଟାଏ **କିମ୍ଭୂତ** -କିମ୍ବାକାର— ଯେପରି ଗଜମୂର୍ଖ ନିକଟରେ **ମହାପଣ୍ଡିତ**

* * *

ସତ୍ୟଦର୍ଶୀର ଆଶ୍ରୟ ନେଇ ସ୍ୱାଧୀନ ଭାବରେ ଚିନ୍ତାକର, ଏବଂ ବିନୟର ସହିତ ସ୍ୱାଧୀନ ମତ ପ୍ରକାଶ

କର । ବହି ପଢ଼ି ବହି ହୋଇଯାଅ ନାହିଁ, ତାର **essence** (ସାର)-କୁ ମଜ୍ଜାଗତ କରିବାକୁ ଚେଷ୍ଟାକର । **Pull the husk to draw the seed†.**

ଉପରୁ-ଉପରୁ ଦେଖି କିଛି ଛାଡ଼ ନାହିଁ ବା କୌଣସି ମତ ପ୍ରକାଶ କରନାହିଁ । କୌଣସି କିଛିର ଶେଷ ନ ଦେଖିଲେ ତାହା ସମ୍ବନ୍ଧରେ ଜ୍ଞାନ ହୁଏନାହିଁ, ଆଉ ନ ଜାଣିଲେ ତୁମେ ତା ବିଷୟରେ କି ମତ ପ୍ରକାଶ କରିବ ?

ଯାହା କିଛି କରନା କାହିଁକି, ତା'ଭିତରେ ସତ୍ୟ ଦେଖିବାକୁ ଚେଷ୍ଟା କର । ସତ୍ୟ ଦେଖିବା ମାନେହିଁ ତାକୁ ଆଦ୍ୟ-ପ୍ରାନ୍ତ ଜାଣିବା, ଆଉ ତାହାହିଁ ଜ୍ଞାନ ।

ଯାହା ତୁମେ ଜାଣନାହିଁ, ଏପରି ବିଷୟରେ ଲୋକଙ୍କୁ ଉପଦେଶ ଦେବାକୁ ଯାଅନାହିଁ ।

* * *

ନିଜର ଦୋଷ ଜାଣି ସୁଦ୍ଧା ଯଦି ତୁମେ ତାହା ତ୍ୟାଗ କରି ନ ପାର, ତେବେ କୌଣସି ମତେ ତାହାର ସମର୍ଥନ କରି ଅନ୍ୟର ସର୍ବନାଶ କର ନାହିଁ ।

---

†ତଷୁକୁ ପକାଇ ଶସ୍ୟଟା ନେବାକୁ ହୁଏ ।

ତୁମେ ଯଦି ସତ୍ ହୁଅ, ତୁମର ଦେଖା-ଦେଖି ହଜାର-ହଜାର ଲୋକ ସତ୍ ହୋଇପଡ଼ିବେ । ଆଉ, ଯଦି ଅସତ୍ ହୁଅ, ତୁମର ଦୁର୍ଦ୍ଦଶା ପାଇଁ ସମବେଦନା ପ୍ରକାଶ କରିବାକୁ କେହି ରହିବେ ନାହିଁ ; କାରଣ, ତୁମେ ଅସତ୍ ହୋଇ ତୁମର ଚତୁର୍ଦ୍ଦିଗକୁ ଅସତ୍ କରି ପକାଇଛ ।

ତୁମେ ଠିକ୍-ଠିକ୍ ଜାଣ ଯେ, ତୁମେ ତୁମର, ତୁମ ନିଜ ପରିବାରର, ଦଶର ଏବଂ ଦେଶର ବର୍ତ୍ତମାନ ଓ ଭବିଷ୍ୟତ୍ ପାଇଁ ଦାୟୀ ।

ନାମ-ଯଶର ଆଶାରେ କୌଣସି କାର୍ଯ୍ୟ କରିବାକୁ ଯିବା ଠିକ୍ ନୁହେଁ । କିନ୍ତୁ କୌଣସି କାର୍ଯ୍ୟ ନିଃସ୍ୱାର୍ଥଭାବରେ କରିବାକୁ ଗଲେହିଁ କାର୍ଯ୍ୟର ଅନୁରୂପ ନାମ-ଯଶ ତୁମର ସେବା କରିବହିଁ କରିବ ।

ନିଜ ପାଇଁ ଯାହା କରାଯାଏ ତାହାହିଁ ସକାମ, ଆଉ, ଅନ୍ୟପାଇଁ ଯାହା କରାଯାଏ ତାହାହିଁ ନିଷ୍କାମ । କାହାରି ପାଇଁ କିଛି ନ ଗ୍ରହିବାକୁ ଯେ ନିଷ୍କାମ କହନ୍ତି—କେବଳ ତାହା ନୁହେଁ ।

ଦେଇଦିଅ, ନିଜପାଇଁ କିଛି ଗ୍ରହନାହିଁ, ଦେଖିବ, ସବୁ ତୁମର ହୋଇଯାଉଛି ।

* * *

ତୁମେ ଅନ୍ୟ ନିକଟରୁ ଯେପରି ପାଇବାକୁ ଇଚ୍ଛା କର, ଅପରକୁ ମଧ୍ୟ ସେହିପରି ଦେବାକୁ ଚେଷ୍ଟା କର— ଏପରି ବୁଝି ଚଳି ପାରିଲେ ହିଁ ଯଥେଷ୍ଟ— ଆପେ-ଆପେ ସମସ୍ତେ ତୁମକୁ ପସନ୍ଦ କରିବେ, ଭଲ ପାଇବେ ।

ନିଜେ ଠିକ୍ ରହି ସମସ୍ତଙ୍କୁ ସତ୍ ଭାବରେ ଖୁସି କରିବାକୁ ଚେଷ୍ଟା କର, ଦେଖିବ ସମସ୍ତେ ତୁମକୁ ଖୁସି କରିବାକୁ ଚେଷ୍ଟା କରୁଛନ୍ତି । ସାବଧାନ୍, ନିଜତ୍ୱ ହରାଇ କାହାରିକୁ ଖୁସି କରିବାକୁ ଯାଅନାହିଁ, ତା'ହେଲେ ତୁମର ଦୁର୍ଗତିର ସୀମା ରହିବ ନାହିଁ ।

* * *

କାର୍ଯ୍ୟ କରିଯାଅ କିନ୍ତୁ ଆବଦ୍ଧ ହୁଅନାହିଁ । ଯଦି ବିଷୟର ପରିବର୍ତ୍ତନରେ ତୁମର ହୃଦୟରେ ପରିବର୍ତ୍ତନ

ଆସୁଛି ବୋଲି ବୁଝିପାର, ଆଉ ସେହି ପରିବର୍ତ୍ତନ ତୁମର ବାଞ୍ଛନୀୟ ନୁହେଁ, ତେବେ ଠିକ୍ ଜାଣିଥାଅ, ତୁମେ ଆବଦ୍ଧ ହୋଇଛ ।

କୌଣସି ପ୍ରକାର ସଂସ୍କାରରେ ଆବଦ୍ଧ ରୁହନାହିଁ, ଏକମାତ୍ର ପରମପୁରୁଷଙ୍କର ସଂସ୍କାର ଛଡ଼ା ଆଉ ଯାହା କିଛି ସବୁହିଁ ବନ୍ଧନ ।

ତୁମର ଦର୍ଶନର-ଜ୍ଞାନର ପରିସର ଯେତେଟିକେ, ଅଦୃଷ୍ଟ ଠିକ୍ ତାହାରି ଆଗକୁ ; ଦେଖିପାରୁ ନାହଁ, ଜାଣିପାରୁନାହଁ, ତେଣୁ ଅଦୃଷ୍ଟ ।

ତୁମର ଶଇତାନ ଅହଙ୍କାରୀ ଅହମ୍ମକ 'ମୁଁ'— ଟାକୁ ବାହାର କରିଦିଅ ; ପରମପିତାଙ୍କ ଇଚ୍ଛାରେ ତୁମେ ଚାଲ, ଅଦୃଷ୍ଟ କିଛି କରିପାରିବ ନାହିଁ । ପରମପିତାଙ୍କ ଇଚ୍ଛାହିଁ ଅଦୃଷ୍ଟ ।

ତୁମର ସବୁ ଅବସ୍ଥା ଭିତରେ ତାଙ୍କର ମଙ୍ଗଳ-ଇଚ୍ଛାକୁ ବୁଝିବାକୁ ଚେଷ୍ଟା କର, ଦେଖିବ କାତର ହେବନାହିଁ, ବରଂ

ହୃଦୟରେ ସବଳତା ଆସିବ ; ଦୁଃଖରେ ମଧ୍ୟ ଆନନ୍ଦ ପାଇବ ।

କାର୍ଯ୍ୟ କରିଯାଅ, ଅଦୃଷ୍ଟ ଭାବି ଭାଙ୍ଗି ପଡ଼ନାହିଁ, ଅଳସୁଆ ହୁଅନାହିଁ, ଯେପରି କାର୍ଯ୍ୟ କରିବ ତୁମର ଅଦୃଷ୍ଟ ସେହିପରି ହୋଇ ଦୃଷ୍ଟ ହେବେ । ସତ୍‌କର୍ମୀର କଦାପି ଅକଲ୍ୟାଣ ହୁଏନାହିଁ । ଦିନକ ଆଗରୁ ବା ପରେ ।

ପରମପିତାଙ୍କ ଆଡ଼କୁ ଅନାଇ କାର୍ଯ୍ୟ କରିଯାଅ । ତାଙ୍କର ଇଚ୍ଛାହିଁ ଅଦୃଷ୍ଟ ; ତା'ଛଡ଼ା ଆଉ ଗୋଟାଏ ଅଦୃଷ୍ଟ ଫଦୃଷ୍ଟ ବନେଇ ବେକୁବ୍ ହୋଇ ବସି ରୁହନାହିଁ । ଅନେକ ଲୋକ ଅଦୃଷ୍ଟରେ ନାହିଁ ବୋଲି ମଙ୍ଗ ଛାଡ଼ିଦେଇ ବସିଥାନ୍ତି, ଅଥଚ ନିର୍ଭରତା ବି ନାହିଁ, ଶେଷରେ ସାରା ଜୀବନ ଦୁର୍ଦ୍ଦଶାରେ କଟାନ୍ତି, ସେ-ସବୁ ଅହଙ୍କାରୀ ।

ତୁମର ତୁମେ ଗଲେହିଁ ଅଦୃଷ୍ଟ ଶେଷ ହେଲା, ଦର୍ଶନ ବି ନାହିଁ, ଅଦୃଷ୍ଟ ବି ନାହିଁ ।

* * *

ଆଗେଇ ଯାଅ, କିନ୍ତୁ ମାପି ଦେଖିବାକୁ ଯାଅ ନାହିଁ କେତେଦୂର ଆଗେଇଛ ; ତା'ହେଲେ ପୁଣି ପଛେଇ ଯିବ ।

ଅନୁଭବ କର, କିନ୍ତୁ ଅଭିଭୂତ ହୋଇ ପଡ଼ନାହିଁ, ତା'ହେଲେ ଚ଼ଳିପାରିବ ନାହିଁ । ଯଦି ଅଭିଭୂତ ହେବାକୁ ହୁଏ ତେବେ ଈଶ୍ୱର-ପ୍ରେମରେ ।

ଯେତେ ପାର ସେବା କର, କିନ୍ତୁ ସାବଧାନ୍, ସେବା ନେବାକୁ ଯେପରି ଇଚ୍ଛା ନ ହୁଏ ।

ଅନୁରୋଧ କର, କିନ୍ତୁ ହୁକୁମ୍ କରିବାକୁ ଯାଅନାହିଁ ।

କେବେହେଲେ ନିନ୍ଦାକର ନାହିଁ, କିନ୍ତୁ ଅସତ୍ୟର ପ୍ରଶ୍ରୟ ଦିଅନାହିଁ ।

ଧୀର ହୁଅ, ତା'ବୋଲି ଅଳସୁଆ, ଦୀର୍ଘସୂତ୍ରୀ ହୁଅନାହିଁ ।

କ୍ଷିପ୍ରହୁଅ, କିନ୍ତୁ ଅଧୀର ହୋଇ ବିରକ୍ତିକୁ ଡ଼ାକିଆଣି ସବୁ ନଷ୍ଟ କରିପକାଅ ନାହିଁ ।

ବୀର ହୁଅ, କିନ୍ତୁ ହିଂସ୍ରକ ହୋଇ ବାଘ ଭାଲୁ ସାଜି ବସନାହିଁ ।

ସ୍ଥିରପ୍ରତିଜ୍ଞ ହୁଅ, ଗୁଆଁର ହୁଅନାହିଁ ।

ତୁମେ ନିଜେ ସହ୍ୟ କର, କିନ୍ତୁ ଯେ ପାରେନା ତାକୁ ସାହାଯ୍ୟ କର, ଘୃଣା କର ନାହିଁ, ସହାନୁଭୂତି ଦେଖାଅ, ସାହସ ଦିଅ ।

ନିଜକୁ ନିଜେ ପ୍ରଶଂସା ଦେବାକୁ କୃପଣ ସାଜ, କିନ୍ତୁ ଅପରର ବେଳକୁ ଦାତା ହୁଅ ।

ଯାହା ଉପରେ କ୍ରୁଦ୍ଧ ହୋଇଛ, ଆଗ ତାକୁ ଆଲିଙ୍ଗନ କର, ନିଜ ଘରେ ଭୋଜନ ପାଇଁ ନିମନ୍ତ୍ରଣ କର, ଡ଼ାଲା ପଠାଅ, ଏବଂ ହୃଦୟ ଖୋଲି ବାକ୍ୟାଳାପ ନ କଲା ପର୍ଯ୍ୟନ୍ତ ଅନୁତାପର ସହିତ ତାହାର ମଙ୍ଗଳ ପାଇଁ ପରମପିତାଙ୍କ ନିକଟରେ ପ୍ରାର୍ଥନା କର ; କାରଣ, ବିଦ୍ୱେଷ ଆସିଲେହିଁ କ୍ରମେ ତୁମେ ସଂକୀର୍ଣ୍ଣ ହୋଇ ପଡ଼ିବ, ଆଉ ସଂକୀର୍ଣ୍ଣତାହିଁ ପାପ ।

ଯଦି କେହି ତୁମର କେବେହେଲେ ଅନ୍ୟାୟ କରେ, ଆଉ ଏକାନ୍ତହିଁ ତାର ପ୍ରତିଶୋଧ ନେବାକୁ ହୁଏ, ତେବେ ତୁମେ ତା ସଙ୍ଗରେ ଏପରି ବ୍ୟବହାର କର ଯାହାଦ୍ୱାରା ସେ ଅନୁତପ୍ତ ହୁଏ ; ଏହାଠାରୁ ବଳି ପ୍ରତିଶୋଧ ଆଉ ନାହିଁ—ଅନୁତାପ ତୁଷାନଳ । ସେଥିରେ ଉଭୟଙ୍କରହିଁ ମଙ୍ଗଳ ।

ବନ୍ଧୁତ୍ୱ ଖାରଜ କରନାହିଁ, ତା'ହେଲେ ଶାସ୍ତିରେ ସମବେଦନା ଓ ସାନ୍ତ୍ୱନା ପାଇବ ନାହିଁ ।

ତୁମ ବନ୍ଧୁ ଯଦି ଅସତ୍ ବି ହୁଏ, ତାକୁ ତ୍ୟାଗ କରନାହିଁ, ବରଂ ପ୍ରୟୋଜନ ହେଲେ ତା'ର ସଙ୍ଗ ବନ୍ଦ କର । କିନ୍ତୁ ଅନ୍ତରରେ ଶ୍ରଦ୍ଧା ରଖି ବିପଦ-ଆପଦରେ କାୟମନୋବାକ୍ୟରେ ସାହାଯ୍ୟ କର, ଆଉ ଅନୁତପ୍ତ ହେଲେ ଆଲିଙ୍ଗନ କର ।

ତୁମ ବନ୍ଧୁ ଯଦି କୁପଥରେ ଯାଏ, ଆଉ ତୁମେ ଯଦି ତାକୁ ଫେରାଇବାକୁ ଚେଷ୍ଟା ନ କର ବା ତ୍ୟାଗ କର, ତାର ଶାସ୍ତି ତୁମକୁ ବି ତ୍ୟାଗ କରିବ ନାହିଁ ।

ବନ୍ଧୁର କୁତ୍ସାରଟନା କର ନାହିଁ ବା କୌଣସି ପ୍ରକାରେ ଅନ୍ୟ ପାଖରେ ନିନ୍ଦା କରନାହିଁ ; କିନ୍ତୁ ତା'ବୋଲି ତା'ନିକଟରେ ତା'ର କୌଣସି ମନ୍ଦର ପ୍ରଶ୍ରୟ ଦିଅନାହିଁ ।

ବନ୍ଧୁ ନିକଟରେ ଉଦ୍ଧତ ହୁଅନାହିଁ, କିନ୍ତୁ ପ୍ରେମର ସହିତ ଅଭିମାନରେ ତାକୁ ଶାସନ କର ।

ବନ୍ଧୁ ନିକଟରୁ କିଛି ପ୍ରତ୍ୟାଶା ରଖନାହିଁ, କିନ୍ତୁ ଯାହା ପାଅ, ପ୍ରେମର ସହିତ ଗ୍ରହଣ କର । କିଛି ଦେଲେ ପାଇବାର ଆଶା ରଖନାହିଁ, କିନ୍ତୁ କିଛି ପାଇଲେ ଦେବାକୁ ଚେଷ୍ଟା କର ।

* * *

ଯେତେଦିନ ଯାଏ ତୁମର ଶରୀର ଓ ମନରେ ବ୍ୟଥା ଲାଗେ, ସେତେଦିନ ଯାଏ ତୁମେ ଗୋଟିଏ ପିପୀଲିକାର ମଧ୍ୟ ବ୍ୟଥା ନିରାକରଣ ଦିଗରେ ଚେଷ୍ଟା ରଖ, ଆଉ ତା ଯଦି ନ କର ତେବେ ତୁମଠାରୁ ହୀନ ଆଉ କିଏ ?

ତୁମ ଗାଲରେ ଗ୍ୱପୁଡ଼ା ମାରିଲେ ଯଦି କହିପାର କିଏ କାହାକୁ ମାରୁଛି ତେବେ ଅନ୍ୟର ବେଳକୁ ମଧ୍ୟ କୁହ,

ଭଲ କଥା। ଖବରଦାର, ନିଜେ ଯଦି ସେପରି ନ ଭାବି ପାର ତେବେ ଅନ୍ୟର ବେଳକୁ କହିବାକୁ ଯାଅନାହିଁ।

ଯଦି ନିଜର କଷ୍ଟବେଳକୁ ସଂସାରୀ ସାଜ, ଅନ୍ୟ ବେଳକୁ ବ୍ରହ୍ମଜ୍ଞାନୀ ସାଜ ନାହିଁ।

ବରଂ ନିଜ ଦୁଃଖ ବେଳକୁ ବ୍ରହ୍ମଜ୍ଞାନୀ ସାଜ, ଆଉ ଅନ୍ୟ ବେଳକୁ ସଂସାରୀ ସାଜ, ଏପରି ଭେଲ ମଧ୍ୟ ଭଲ।

ଯଦି ମଣିଷ ହୁଅ ତ ନିଜ ଦୁଃଖରେ ହସ, ଆଉ ପର ଦୁଃଖରେ କାନ୍ଦ।

ନିଜର ମୃତ୍ୟୁ ଯଦି ଅପସନ୍ଦ କର, ତେବେ କେବେହେଲେ କାହାକୁ 'ମର' ବୋଲି କୁହନାହିଁ।

* * *

ହସ, କିନ୍ତୁ ବିଦ୍ରୂପରେ ନୁହେଁ।

କାନ୍ଦ, କିନ୍ତୁ ଆସକ୍ତିରେ ନୁହେଁ, ଭଲପାଇବାରେ, ପ୍ରେମରେ।

କୁହ, କିନ୍ତୁ ଆତ୍ମପ୍ରଶଂସାରେ ବା ଖ୍ୟାତି ବିସ୍ତାର ପାଇଁ ନୁହେଁ।

ତୁମର ଚରିତ୍ରର କୌଣସି ଉଦାହରଣରେ ଯଦି କାହାରି ମଙ୍ଗଳ ହୁଏ, ତେବେ ତା' ନିକଟରେ ତାହା ଗୋପନ ରଖ ନାହିଁ ।

ତୁମର ସତ୍‌ସ୍ୱଭାବ କର୍ମରେ ଫୁଟି ଉଠୁ, କିନ୍ତୁ ନିଜ ଭାଷାରେ ଯେପରି ବ୍ୟକ୍ତ ନ ହୁଏ, ନଜର ରଖ ।

ସତ୍—ରେ ତୁମର ଆସକ୍ତି ସଂଲଗ୍ନ କର, ଅଜ୍ଞାତସାରରେ ସତ୍ ହେବ । ତୁମେ ଆପଣା ଭାବରେ ସତ୍‌ଚିନ୍ତାରେ ନିମଗ୍ନ ହୁଅ, ତୁମ ଅନୁଯାୟୀ ଭାବ ଆପଣାଛାଏଁ ଫୁଟି ଉଠିବ ।

ଅସତ୍ ଚିନ୍ତା ଯେପରି ଗ୍ରହାଣୀ, ବାକ୍ୟ, ଆଚରଣ, ବ୍ୟବହାର ଇତ୍ୟାଦିରେ ଫୁଟିଉଠେ, ସତ୍ ଚିନ୍ତା ମଧ୍ୟ ସେହିପରି ଉକ୍ତ ରୂପେ ଫୁଟି ଉଠିଥାଏ ।

* * *

ସ୍ପଷ୍ଟବାଦୀ ହୁଅ କିନ୍ତୁ ମିଷ୍ଟଭାଷୀ ହୁଅ ।

କହିବା ଆଗରୁ ବିବେଚନା କର, କିନ୍ତୁ କହି ବିମୁଖ ହୁଅନାହିଁ ।

ଯଦି ଭୁଲ୍ କହିଥାଅ, ସାବଧାନ ହୁଅ, ଭୁଲ କରନାହିଁ ।

ସତ୍ୟ କୁହ କିନ୍ତୁ ସଂହାର ଆଣନାହିଁ ।

ସତ୍ କଥା କହିବା ଭଲ, କିନ୍ତୁ ଭାବିବା, ଅନୁଭବ କରିବା ଆହୁରି ଭଲ ।

ଅସତ୍ କଥା କହିବା ଅପେକ୍ଷା ସତ୍ କଥା କହିବା ଭଲ ନିଶ୍ଚୟ, କିନ୍ତୁ କହିବା ସାଙ୍ଗରେ କାମ କରିବା ଓ ଅନୁଭବ ନ ଥିଲେ କ'ଣ ହେଲା—ବେହେଲା, ବୀଣା ଯେପରି ବାଦକାନୁଗ୍ରହରୁ ଭଲ ବାଜେ କିନ୍ତୁ ସେମାନେ ନିଜେ କିଛି ଅନୁଭବ କରିପାରନ୍ତି ନାହିଁ ।

ଯେ ଅନୁଭୂତିର ଖୁବ୍ ଗଳ୍ପ କରେ ଅଥଚ ତା'ର ଲକ୍ଷଣ ପ୍ରକାଶ ପାଏନାହିଁ, ତା'ର ଗଳ୍ପଗୁଡିକ କଳ୍ପନା-ମାତ୍ର ବା ଆଡମ୍ବର ।

ଯେତେ ଡୁବିବ ସେତେ ବେମାଲୁମ ହେବ ।

ଯେପରି ଡାଳିମ୍ବ ପାଚିଲେହିଁ ଫାଟିଯାଏ, ତୁମ

ଅନ୍ତରରେ ସତ୍‌ଭାବ ପାଚିଲେ ଆପେ ଫାଟିଯିବ – ତୁମ ମୁହଁରେ ତାହା ପ୍ରକାଶ କରିବାକୁ ହେବନାହିଁ ।

* * *

ଯେଉଁ ଖିଆଲ ବିବେକର ଅନୁଚର, ତାହାରି ଅନୁସରଣ କର, ମଙ୍ଗଳର ଅଧିକାରୀ ହେବ ।

ବିସ୍ତାରରେ ଅସ୍ତିତ୍ୱ ହରାଅ, କିନ୍ତୁ ଲିଭିଯାଅ ନାହିଁ । ବିସ୍ତାରହିଁ ଜୀବନ, ବିସ୍ତାରହିଁ ପ୍ରେମ ।

ଯେଉଁ କର୍ମ ମନର ପ୍ରସାରଣ ଆଣିଦିଏ, ତାହାହିଁ ସୁକର୍ମ, ଆଉ ଯେଉଁଥିରେ ମନରେ ସଂସ୍କାର, ଜିଦ୍ ଇତ୍ୟାଦି ଆସେ, ସାର କଥା ଯେଉଁଥିରେ ମନ ସଙ୍କୀର୍ଣ୍ଣ ହୁଏ ତାହାହିଁ କୁକର୍ମ ।

ଯେଉଁ କର୍ମ ମଣିଷ ପାଖରେ କହିଲେ ମୁହଁରେ କାଳିମା ପଡେ, ତାହା କରିବାକୁ ଯାଅନାହିଁ । **ଘୃଣା-ଲଜ୍ଜା-ଭୟରେ ଗୋପନୀୟତା ଯେଉଁଠି** ସେହିଠାରେହିଁ ଦୁର୍ବଳତା, ସେହିଠାରେହିଁ ପାପ ।

ଯେଉଁ ସାଧନା କରିଲେ ହୃଦୟରେ ପ୍ରେମ ଆସେ, ତାହାହିଁ କର, ଆଉ ଯେଉଁଥିରେ କ୍ରୁରତା, କଠୋରତା, ହିଂସା ଆସେ ତାହା ଆପାତତଃ ଲାଭଜନକ ହେଲେ ମଧ୍ୟ ତା' ପାଖକୁ ଯାଅନାହିଁ ।

ତୁମେ ଯଦି ଏପରି ଶକ୍ତି ଲାଭ କରିଥାଅ ଯାହାଦ୍ୱାରା ଚନ୍ଦ୍ର-ସୂର୍ଯ୍ୟ କକ୍ଷଚ୍ୟୁତ କରିପାର, ପୃଥିବୀ ଭାଙ୍ଗି ଟୁକୁରା-ଟୁକୁରା କରିପାର ବା ସମସ୍ତଙ୍କୁ ଐଶ୍ୱର୍ଯ୍ୟଶାଳୀ କରି ଦେଇପାର, କିନ୍ତୁ ଯଦି ହୃଦୟରେ ପ୍ରେମ ନ ଥାଏ, ତେବେ ତୁମର କିଛି ବି ହୋଇନାହିଁ ।

* * *

ଗୋଟାଏ ଗ୍ରହିବାକୁ ଯାଇ ଦଶଟା ଗ୍ରହି ବସ ନାହିଁ, ଗୋଟିକର ଯେପରି ଚରମ ହୁଏ ତାହାହିଁ କର, ସବୁଗୁଡିକ ହିଁ ପାଇବ ।

ଜୀବନକୁ ଯେଉଁ ଭାବରେ ବଳି ଦେବ ନିଶ୍ଚୟ ସେହିପରି ଜୀବନ୍ ଲାଭ କରିବ ।

ଯେ-କେହି ପ୍ରେମ ପାଇଁ ଜୀବନ ଦାନ କରେ, ସେ ପ୍ରେମର ଜୀବନ ଲାଭ କରେ ।

ଉଦ୍ଦେଶ୍ୟରେ ଅନୁପ୍ରାଣିତ ହୁଅ, ଆଉ ପ୍ରଶାନ୍ତ ଚିତ୍ତରେ ସମସ୍ତ ସହ୍ୟ କର, ତେବେଯାଇ ତୁମର ଉଦ୍ଦେଶ୍ୟ ସଫଳ ହେବ ।

* * *

ହୃଦୟ ଦିଅ, କେବେହେଲେ ହଟିଯିବାକୁ ହେବନାହିଁ ।

ନିର୍ଭର କର, କେବେହେଲେ ଭୟ ପାଇବ ନାହିଁ ।

ବିଶ୍ୱାସ କର, ଅନ୍ତରର ଅଧିକାରୀ ହେବ ।

ସାହସ ଦିଅ, କିନ୍ତୁ ଶଙ୍କା ଜଗାଇ ନ ଦେବାକୁ ଚେଷ୍ଟା କର ।

ଧୈର୍ଯ୍ୟ ଧର, ବିପଦ କଟିଯିବ ।

ଅହଙ୍କାର କରନାହିଁ, ଜଗତରେ ହୀନ ହୋଇ ରହିବାକୁ ପଡ଼ିବ ନାହିଁ ।

କେହି ତୁମକୁ ଦୋଷୀ କରିବା ପୂର୍ବରୁ କାତର ଭାବରେ ନିଜ ଦୋଷ ସ୍ୱୀକାର କର, ମୁକ୍ତ-କଳଙ୍କ ହେବ, ଜଗତର ସ୍ନେହର ପାତ୍ର ହେବ ।

ସଂଯତ ହୁଅ, କିନ୍ତୁ ନିର୍ଭୀକ ହୁଅ ।

ସରଳ ହୁଅ, କିନ୍ତୁ ବେକୁବ ହୁଅନାହିଁ ।

ବିନୀତ ହୁଅ, ତାହା ବୋଲି ଦୁର୍ବଳହୃଦୟ ହୁଅନାହିଁ ।

* * *

ନିଷ୍ଠା ରଖ, କିନ୍ତୁ **ନିଷ୍ଠାନ୍ଧ** ହୁଅନାହିଁ ।

ସାଧୁ ସାଜନାହିଁ, ସାଧୁ ହେବାକୁ ଚେଷ୍ଟାକର ।

କୌଣସି ମହାପୁରୁଷଙ୍କ ସହିତ ତୁମର ନିଜର ତୁଳନା କରନାହିଁ, କିନ୍ତୁ ସର୍ବଦା ତାଙ୍କର ଅନୁସରଣ କର ।

ଯଦି ପ୍ରେମ ଥାଏ, ତେବେ ଅପରକୁ ମୋର ବୋଲି କୁହ, କିନ୍ତୁ ସ୍ୱାର୍ଥ ରଖନାହିଁ ।

ପ୍ରେମର କଥା କହିବା ଆଗରୁ ପ୍ରେମ କର ।

* * *

ଅନ୍ଧ ହେବା ଦୁର୍ଭାଗ୍ୟ ସତ, କିନ୍ତୁ ଯଷ୍ଟିଚ୍ୟୁତ ହେବା ଆହୁରି ଦୁର୍ଭାଗ୍ୟ; କାରଣ ଯଷ୍ଟିହିଁ ଅନେକାଂଶରେ ଚକ୍ଷୁର କାର୍ଯ୍ୟକରେ ।

ସ୍କୁଲକୁ ଗଲେହିଁ ତାକୁ ଛାତ୍ର କୁହାଯାଏ ନାହିଁ, ଆଉ ମନ୍ତ୍ର ନେଲେ ହିଁ ତାକୁ ଶିଷ୍ୟ କୁହାଯାଏ ନାହିଁ, ହୃଦୟଟିକୁ ଶିକ୍ଷକ ବା ଗୁରୁଙ୍କ ଆଦେଶ ପାଳନ ନିମିତ୍ତ ସର୍ବଦା ଉନ୍ମୁକ୍ତ ରଖିବାକୁ ହୁଏ । ଅନ୍ତରରେ ସ୍ଥିର ବିଶ୍ୱାସ ଆବଶ୍ୟକ । ସେ ଯାହା କହିଦେବେ ତାହାହିଁ କରିବାକୁ ହେବ ବିନା ଆପତ୍ତିରେ, ବିନା ଓଜରରେ ବରଂ ପରମ ଆନନ୍ଦରେ ।

ଯେଉଁ ଛାତ୍ର ବା ଶିଷ୍ୟ ପ୍ରାଣପଣେ ଆନନ୍ଦର ସହିତ ଗୁରୁଙ୍କ ଆଦେଶ ପାଳନ କରିଛି, ସେ କଦାପି ବିଫଳ ହୋଇନାହିଁ ।

ଶିଷ୍ୟର କର୍ତ୍ତବ୍ୟ ପ୍ରାଣପଣେ ଗୁରୁଙ୍କ ଆଦେଶ କାର୍ଯ୍ୟରେ ପରିଣତ କରିବା, ଗୁରୁଙ୍କୁ ଲକ୍ଷ୍ୟ କରି ଚ୍ଚଲିବା ।

ଯେତେବେଳେ ଦେଖିବ, ଗୁରୁଙ୍କ ଆଦେଶରେ ଶିଷ୍ୟର ଆନନ୍ଦ ହୋଇଛି, ମୁଖ ପ୍ରଫୁଲ୍ଲ ହୋଇ ଉଠିଛି,

ସେତେବେଳେ ବୁଝିବ ଯେ ତା'ର ହୃଦୟରେ ଶକ୍ତି ଆସିଛି ।

* * *

ଖବରଦାର, କାହାକୁ ହୁକୁମ କରି କିମ୍ବା ଚାକର-ବାକର ଦ୍ୱାରା ଗୁରୁଙ୍କ ସେବା-ଶୁଶ୍ରୂଷା କରାଇବାକୁ ଯାଅନାହିଁ— ପ୍ରସାଦରୁ ବଞ୍ଚିତ ହୁଅ ନାହିଁ ।

ମା ନିଜ ହାତରେ ଛୁଆପିଲାଙ୍କର ଯତ୍ନ କରେ ବୋଲି ଛୁଆ ଉପରେ ଅଶ୍ରଦ୍ଧା ଆସେ ନାହିଁ— ସେଥିପାଇଁ ଏତେ ଭଲ ପାଇବା ।

ନିଜ ହାତରେ ଗୁରୁ ସେବା କରିଲେ ଅହଙ୍କାର ପତଳା ହୁଏ, ଅଭିମାନ ଦୂରେଇ ଯାଏ, ଆଉ ପ୍ରେମ ଆସେ ।

ଗୁରୁହିଁ ଭଗବାନଙ୍କର ସାକାର ମୂର୍ତ୍ତି, ଆଉ ସେହିଁ **Absolute*** ।

* ଅଖଣ୍ଡ

ଗୁରୁଙ୍କୁ ମୋର ବୋଲି ଜାଣିବାକୁ ହୁଏ— ମା, ବାପ, ପୁଅ ଇତ୍ୟାଦି ଘରର ଲୋକଙ୍କ କଥା ଭାବିଲାବେଳେ ଯେପରି ତାଙ୍କର (ଗୁରୁଙ୍କର) ମୁହଁ ବି ମନେପଡେ ।

ତାଙ୍କର ଭର୍ତ୍ସନାର ଭୟ ରଖିବା ଅପେକ୍ଷା ଭଲ ପାଇବାର ଭୟ ରଖିବାହିଁ ଭଲ;— ମୁଁ ଯଦି ଅନ୍ୟାୟ କରେ ତେବେ ତାଙ୍କର ପ୍ରାଣରେ ବ୍ୟଥା ଲାଗିବ ।

ସବୁ ସମୟରେ ତାଙ୍କୁ ଅନୁସରଣ କରିବାକୁ ଚେଷ୍ଟା କର; ସେ ଯାହା କହନ୍ତି, ଯତ୍ନର ସହିତ ତାହା ରକ୍ଷା କରି ଅଭ୍ୟାସରେ ଚରିତ୍ରଗତ କରିବାକୁ ନିୟତ ଚେଷ୍ଟା କର; ଆଉ ତାହାହିଁ ସାଧନା ।

* * *

ତୁମେ ଗୁରୁଙ୍କଠାରେ ବା ସତ୍‌ରେ ଚିତ୍ତ ସଂଲଗ୍ନ କରି ଆତ୍ମୋନ୍ନୟନ ପାଇଁ ଯତ୍ନବାନ୍ ହୁଅ, ଅନ୍ୟମାନେ ତୁମ ବିଷୟରେ କଣ କହୁଛନ୍ତି ଦେଖିବାକୁ ଯାଇ ଆକୃଷ୍ଟ ହୋଇ ପଡନାହିଁ— ତା'ହେଲେ ଆସକ୍ତ ହୋଇ ପଡ଼ିବ, ଆତ୍ମୋନ୍ନୟନ ହେବନାହିଁ ।

ସ୍ୱାର୍ଥବୁଦ୍ଧି ଅନେକ ସମୟରେ ଆଦର୍ଶରେ ଦୋଷାରୋପ କରେ, ସନ୍ଦେହ ଆଣେ, ଅବିଶ୍ୱାସ ଆଣେ । ସ୍ୱାର୍ଥବୁଦ୍ଧିବଶତଃ ଆଦର୍ଶରେ ଦୋଷ ଦେଖ ନାହିଁ, ସନ୍ଦେହ କରନାହିଁ, ଅବିଶ୍ୱାସ କରନାହିଁ — କରିଲେ ଆତ୍ମୋନ୍ନୟନ ହେବନାହିଁ ।

ମୁକ୍ତସ୍ୱାର୍ଥ ହୋଇ ଆଦର୍ଶରେ ଦୋଷ ଦେଖିଲେ ତା'ର ଅନୁସରଣ କରନାହିଁ — କରିଲେ ଆତ୍ମୋନ୍ନୟନ ହେବନାହିଁ ।

ଆଦର୍ଶର ଦୋଷ- ମୂଢ଼ ଅହଙ୍କାର, ସ୍ୱାର୍ଥ ଚିନ୍ତା, ଅପ୍ରେମ । ଅନୁସରଣକାରୀର ଦୋଷ—ସନ୍ଦେହ, ଅବିଶ୍ୱାସ, ସ୍ୱାର୍ଥବୁଦ୍ଧି ।

ଯିଏ ପ୍ରେମର ଅଧିକାରୀ, ନିଃସନ୍ଦେହଚିତ୍ତରେ ତାଙ୍କରି ଅନୁସରଣ କର, ମଙ୍ଗଳର ଅଧିକାରୀ ହେବହିଁ ହେବ ।

ଯିଏ ଛଳେ-ବଳେ-କୌଶଳେ, ଯେପରି ହେଉନା କାହିଁକି, ସର୍ବଭୂତର ମଙ୍ଗଳଚେଷ୍ଟାରେ ଯତ୍ନବାନ୍,

ତାଙ୍କରି ଅନୁସରଣ କର, ମଙ୍ଗଳର ଅଧିକାରୀ ହେବହିଁ ହେବ ।

ଯିଏ କୌଣସି ପ୍ରକାରେ କାହାରିକୁ ମଧ୍ୟ ଦୁଃଖ ଦିଅନ୍ତି ନାହିଁ, ଅଥଚ ଅସତ୍‌ର ମଧ୍ୟ ପ୍ରଶ୍ରୟ ଦିଅନ୍ତି ନାହିଁ, ତାଙ୍କରି ଅନୁସରଣ କର, ମଙ୍ଗଳର ଅଧିକାରୀ ହେବହିଁ ହେବ ।

* * *

ଯାହାଙ୍କୁ ତୁମେ ଗୁରୁକରୂପେ ମନୋନୀତ କରି ନେଇଛ , ତାଙ୍କ ପାଖରେ ତୁମ ହୃଦୟର କୌଣସି କଥା ଗୋପନ ରଖନାହିଁ । ଗୋପନ କରିଲେ ତାଙ୍କୁ ଅବିଶ୍ୱାସ କରାହେବ, ଆଉ, ଅବିଶ୍ୱାସରେହିଁ ଅଧଃପତନ । ଗୁରୁଙ୍କ ଅନ୍ତର୍ଯ୍ୟାମୀ, ଯଦି ଠିକ୍ ଠିକ୍ ବିଶ୍ୱାସ ହୁଏ, ତେବେ ତୁମେ କୁକାର୍ଯ୍ୟ ଆଦୌ କରିପାରିବ ନାହିଁ । ଆଉ, ଯଦି ବା କରି ପକାଅ, ତେବେ ନିଶ୍ଚୟ ସ୍ୱୀକାର କରିବ । ଆଉ, ଗୋପନ କରିବାକୁ ଇଚ୍ଛା ହେଲେ ହିଁ ଜାଣିରଖ, ତୁମ ହୃଦୟରେ ଦୁର୍ବଳତା ଆସିଛି ଏବଂ ଅବିଶ୍ୱାସ ତୁମକୁ ଆକ୍ରମଣ କରିଛି,—ସାବଧାନ ହୁଅ, ନଚେତ୍ ଅନେକ ଦୂରକୁ ଗଡ଼ିଯିବ ।

ତୁମେ ଯଦି ଗୋପନ କର, ତୁମର ସତ୍‌ଗ୍ରାଳକ ମଧ୍ୟ ତୁମଠାରୁ ଆତ୍ମଗୋପନ କରିବେ ; ଆଉ, ତୁମେ ତୁମର ହୃଦୟର ଭାବ ବ୍ୟକ୍ତ କର, ଉନ୍ମୁକ୍ତ ହୁଅ, ସେ ବି ତୁମ ସମ୍ମୁଖରେ ଉନ୍ମୁକ୍ତ ହେବେ, ଏହା ନିଶ୍ଚୟ ।

ଗୋପନ ଅଭିପ୍ରାୟରେ ଗ୍ରାଳକଙ୍କୁ 'ଅନ୍ତର୍ଯ୍ୟାମୀ, ସବୁ ଜାଣିପାରୁଛନ୍ତି'-ବୋଲି ଗ୍ରାଲାକି କଲେ ନିଜେ ହିଁ ପତିତ ହେବ, ଦୁର୍ଦ୍ଦଶା ଘେରି ଧରିବ ।

ହୃଦୟ-ବିନିମୟ ଭଲ ପାଇବାର ଗୋଟିଏ ଲକ୍ଷଣ, ଆଉ ତୁମେ ଯଦି ସେହି ହୃଦୟକୁହିଁ ଗୋପନ କର, ତେବେ ଏହା ନିଶ୍ଚୟ ଯେ, ତୁମେ ସ୍ୱାର୍ଥଭାବାପନ୍ନ, ତାଙ୍କୁ କେବଳ କଥାରେହିଁ ଭଲପାଅ ।

କାମରେ ଗୋପନ ଅଛି, କିନ୍ତୁ ଭଲପାଇବାରେ ତ ଉଭୟଙ୍କ ଭିତରେ କିଛି ହେଲେ ଗୋପନ ରହିପାରେ ନାହିଁ ।

ସତ୍-ଗ୍ରାଳକ ପତଳା ଅହଂଯୁକ୍ତ ; ସେ ନିଜେ ତାଙ୍କର କ୍ଷମତା କୌଣସି ମତେ ତୁମ ଉପରେ ଜାହିର

କରିବେ ନାହିଁ ; ଏବଂ ସେଇଥିପାଇଁ ତୁମର ଭାବାନୁଯାୟୀ ତୁମକୁ ଅନୁସରଣ କରିବେ—ଆଉ ଏହାହିଁ ସତ୍‌ସ୍ୱଳକଙ୍କର ସ୍ୱଭାବ । ଯଦି ସତ୍‌ସ୍ୱଳକ ଅବଲମ୍ବନ କରିଥାଅ, ଯାହା କର, ଭୟନାହିଁ, ମରିବ ନାହିଁ ; କିନ୍ତୁ କଷ୍ଟ ପାଇଁ ରାଜି ଥାଅ ।

* * *

ଦୀନ ହେବା ଅର୍ଥ ଅପରିଚ୍ଛନ୍ନ ସାଜିବା ନୁହେଁ ।

ବ୍ୟାକୁଳତା ମାନେ ବିଜ୍ଞାପନ ନୁହେଁ, ବରଂ ହୃଦୟର ଏକାନ୍ତ ଉଦ୍ଦାମ ଆକାଂକ୍ଷା ।

ସ୍ୱାର୍ଥପରତା ସ୍ୱାଧୀନତା ନୁହେଁ ବରଂ ସ୍ୱାଧୀନତାର ଅନ୍ତରାୟ ।

ତୁମେ ଯେତେ ଲୋକଙ୍କର ସେବା କରିବ ସେତେ ଲୋକଙ୍କର ଯଥାସର୍ବସ୍ୱର ଅଧୀଶ୍ୱର ହେବ ।

ତେଜ ମାନେ କ୍ରୋଧ ନୁହେଁ, ବରଂ ବିନୟ ସମନ୍ୱିତ ଦୃଢ଼ତା ।

**ସାଧୁ ମାନେ ଯାଦୁକର ନୁହେଁ, ବରଂ ତ୍ୟାଗୀ, ପ୍ରେମୀ ।**

**ଭକ୍ତ ମାନେ କ'ଣ ଅହମ୍ମକ ? — ବରଂ ବିନୀତ-ଅଂହଯୁକ୍ତ ଜ୍ଞାନୀ ।**

**ସହିଷ୍ଣୁତା ମାନେ ପଳାୟନ ନୁହେଁ, ପ୍ରେମର ସହିତ ଆଲିଙ୍ଗନ ।**

* * *

କ୍ଷମା କର, କିନ୍ତୁ ଅନ୍ତରର ସହିତ ; ଭିତର ଗରମ ରଖି ଅପାରଗତାବଶତଃ କ୍ଷମାଶୀଳ ହେବାକୁ ଯାଅନାହିଁ ।

ବିଗ୍ରହର ଭାର, ଶାସ୍ତିର ଭାର ଆପଣା ହାତରେ ନେବାକୁ ଯାଅନାହିଁ ; ଅନ୍ତରର ସହିତ ପରମପିତାଙ୍କ ଉପରେ ନ୍ୟସ୍ତ କର, ଭଲହେବ ।

କାହାରିକୁ ଅନ୍ୟାୟ ପାଇଁ ତୁମେ ଯଦି ଶାସ୍ତି ବିଧାନ କର, ନିଶ୍ଚୟ ଜାଣିଥାଅ— ପରମପିତା ସେହି ଶାସ୍ତି ଉଭୟଙ୍କ ମଧ୍ୟରେ ତାରତମ୍ୟାନୁସାରେ ଭାଗ କରିଦେବେ ।

ପିତାଙ୍କ ପାଇଁ, ସତ୍ୟ ପାଇଁ ଦୁଃଖ ଭୋଗ କର, ଅନନ୍ତ ଶାନ୍ତି ପାଇବ ।

ତୁମେ ସତ୍ୟରେ ଅବସ୍ଥାନ କର, ଅନ୍ୟାୟକୁ ସହ୍ୟ କରିବାକୁ ଚେଷ୍ଟା କର, ପ୍ରତିରୋଧ କରନାହିଁ, ଶୀଘ୍ରହିଁ ପରମ ମଙ୍ଗଳର ଅଧିକାରୀ ହେବ ।

* * *

ଯଦି ପାପ କରିଥାଅ ତେବେ କାତର କଣ୍ଠରେ ତାହା ପ୍ରକାଶ କର, ଶୀଘ୍ରହିଁ ସାନ୍ତ୍ୱନା ପାଇବ ।

ସାବଧାନ ! ସଂକୀର୍ଣ୍ଣତା ବା ପାପକୁ ଗୋପନ ରଖନାହିଁ, ଉତ୍ତରୋତ୍ତର ବର୍ଦ୍ଧିତ ହୋଇ ଅତି ସତ୍ୱର ତୁମକୁ ଅଧଃପତନର ଚରମକୁ ନେଇଯିବ ।

ଅନ୍ତରରେ ଯାହା ଗୋପନ କରିବ, ତାହାହିଁ ବୃଦ୍ଧି ପାଇବ ।

* * *

ଦାନ କର, କିନ୍ତୁ ଦୀନ ହୋଇ ପ୍ରତ୍ୟାଶା ନ ରଖ । ତୁମର ଅନ୍ତରରେ ଦୟାର ଦରଜା ଖୋଲିଯାଉ ।

ଦୟା କରିବା ହିସାବରେ ଦାନ ଅହଂକାରର ପରିପୋଷକ ।

ଯିଏ କାତରଭାବରେ ତୁମର ଦାନ ଗ୍ରହଣ କରନ୍ତି, ଗୁରୁ ରୂପେ ସେ ତୁମ ହୃଦୟରେ ଦୟା ଭାବର ଉଦ୍‌ବୋଧନ କରନ୍ତି ; ଅତଏବ କୃତଜ୍ଞ ହୁଅ !

ଯାହାକୁ ଦାନ କରିବ ; ତା'ର ଦୁଃଖ ଅନୁଭବ କରି ସହାନୁଭୂତି ପ୍ରକାଶ କର, ସାହସ ଦିଅ, ସାନ୍ତ୍ୱନା ଦିଅ ; ପରେ ଯାହା ସାଧ୍ୟ, ଯତ୍ନସହକାରେ ଦିଅ ; ପ୍ରେମର ଅଧିକାରୀ ହେବ—ଦାନ ସିଦ୍ଧ ହେବ ।

ଦାନ କରି ପ୍ରକାଶ ଯେତେ ନ କର, ସେତେହିଁ ଭଲ, ଅହଙ୍କାରରୁ ରକ୍ଷା ପାଇବ ।

ଯାଚଞ୍ଜାକାରୀଙ୍କୁ ଫେରାଅ ନାହିଁ, ଅର୍ଥ ନ ହେଲେ ସହାନୁଭୂତି, ସାହସ, ସାନ୍ତ୍ୱନା, ମିଷ୍ଟକଥା, ଯା'ହେଉ ଗୋଟାଏ ଦିଅ— ହୃଦୟ କୋମଳ ହେବ ।

ଅପରର ମଙ୍ଗଳ-କାମନାହିଁ ନିଜ ମଙ୍ଗଳର ପ୍ରସୂତି ।

* * *

ହଗି ମରିବା ଅପେକ୍ଷା ଗୁଲି ମରିବା ଭଲ ।

ଯେ କଥାରେ କମ୍ କାମରେ ବେଶୀ ସେ ହିଁ ପ୍ରଥମ ଶ୍ରେଣୀର କର୍ମୀ; ଯେ ଯେପରି କହେ, ସେହିପରି କରେ, ସେ ମଧ୍ୟମ ଶ୍ରେଣୀର କର୍ମୀ ; ଯେ କହେ ବେଶୀ, କାମରେ କମ୍, ସେ ତୃତୀୟ ଶ୍ରେଣୀର କର୍ମୀ ; ଆଉ ଯାହାର କହିବାରେ ବି ଆଳସ୍ୟ, କରିବାରେ ବି ଆଳସ୍ୟ, ସେ ହିଁ ଅଧମ ।

ଦୌଡ଼ି ଯାଅ, କିନ୍ତୁ ଧଇଁସଇଁ ହୋଇ ଯାଅନାହିଁ । ଆଉ ଯେପରି ଝୁଣ୍ଟି ନ ପଡ଼, ଦୃଷ୍ଟି ରଖ ।

ଯେଉଁ କାର୍ଯ୍ୟରେ ତୁମର ବିରକ୍ତି ଓ କ୍ରୋଧ ଆସୁଛି, ନିଶ୍ଚୟ ଜାଣ, ତାହା ପଣ୍ଡ ହେବା ଉପରେ ।

କାର୍ଯ୍ୟ ସାଧନ ସମୟରେ ତହିଁରୁ ଯେଉଁ ବିପଦ ଆସିବ ସେଥିପାଇଁ ରାଜିଥାଅ ; ବିରକ୍ତ ବା ଅଧୀର ହୁଅନାହିଁ, ସଫଳତା ତୁମର ଦାସୀ ହେବ ।

ଚେଷ୍ଟା କର, ଦୁଃଖ କରନାହିଁ, କାତର ହୁଅନାହିଁ, ସଫଳତା ଆସିବହିଁ ।

କାର୍ଯ୍ୟକୁଶଳର ଚିହ୍ନ ଦୁଃଖର ପ୍ରଳାପ ନୁହେଁ ।

ଉତ୍ତେଜିତ ମସ୍ତିଷ୍କ ଓ ବୃଥା ଆଡ଼ମ୍ବରଯୁକ୍ତ ଚିନ୍ତା— ଦୁଇଟିହିଁ ଅସିଦ୍ଧିର ଲକ୍ଷଣ ।

ବିପଦକୁ ଫାଙ୍କି ଦେଇ ଓ ପରାସ୍ତ କରି ସଫଳତା -ଲକ୍ଷ୍ମୀ ଲାଭ କର । ବିପଦ ଯେପରି ତୁମକୁ **ସଫଳତାରୁ** ବଞ୍ଚିତ ନ କରେ ।

ସୁଖ କିମ୍ବା ଦୁଃଖ ଯଦି ତୁମର ଗତିରୋଧ ନ କରେ ତେବେ ତୁମେ ନିଶ୍ଚୟ ଗନ୍ତବ୍ୟରେ ପହଞ୍ଚିବ, ସନ୍ଦେହ ନାହିଁ ।

* * *

ଧନୀ ହୁଅ କ୍ଷତି ନାହିଁ, କିନ୍ତୁ ଦୀନ ଏବଂ ଦାତା ହୁଅ ।

ଧନବାନ୍ ଯଦି ଅହଙ୍କାରୀ ହୁଏ, ସେ ଦୁର୍ଦ୍ଦଶାରେ ଅବନତ ହୁଏ ।

ଦୀନତାହୀନ ଅହଙ୍କାରୀ ଧନୀ ପ୍ରାୟ ଅବିଶ୍ୱାସୀ ହୁଏ, ଆଉ ତା'ର ହୃଦୟରେ ସ୍ୱର୍ଗର ଦ୍ୱାର ଖୋଲେ ନାହିଁ ।

ଅହଙ୍କାରୀ ଧନୀ ମଳିନତାର ଦାସ, ତେଣୁ ଜ୍ଞାନକୁ ଉପେକ୍ଷା କରେ ।

* * *

କ୍ଷମା କର, କିନ୍ତୁ କ୍ଷତି କର ନାହିଁ ।

ପ୍ରେମକର, କିନ୍ତୁ ଆସକ୍ତ ହୁଅନାହିଁ ।

ଖୁବ୍ ଭଲପାଅ, କିନ୍ତୁ ଦିହଘସା ହୁଅନାହିଁ ।

ବକ୍-ବକ୍ ହେବା ପୂର୍ଣ୍ଣତ୍ୱର ଚିହ୍ନ ନୁହେଁ ।

ଯଦି ନିଜେ ସନ୍ତୁଷ୍ଟ ବା ନିର୍ଭାବନା ହୋଇଥାଅ ତେବେ ଅନ୍ୟପାଇଁ ଚେଷ୍ଟାକର ।

ଯେଉଁ ପରିମାଣରେ ଦୁଃଖର କାରଣରେ ମନ ସଂଲଗ୍ନ ହୋଇ ଅଭିଭୂତ ହେବ, ସେହି ପରିମାଣରେ ହୃଦୟରେ ଭୟ ଆସିବ ଓ ଦୁର୍ବଳତାଗ୍ରସ୍ତ ହୋଇ ପଡ଼ିବ ।

ଯଦି ରକ୍ଷା ପାଇବାକୁ ଚାହଁ, ଭୟ ଏବଂ ଦୁର୍ବଳତା ବୋଲି କିଛି ରଖନାହିଁ ; ସତ୍ ଚିନ୍ତା ଏବଂ ସତ୍‌କର୍ମରେ ଡୁବି ରୁହ ।

ଅସତ୍‌ରେ ଆସକ୍ତି ହେତୁ ଭୟ, ଶୋକ ଓ ଦୁଃଖ ଆସେ ।

ଅସତ୍ ପରିହାର କର ; ସତ୍‌ରେ ଆସ୍ଥାବାନ୍ ହୁଅ ; ତ୍ରାଣ ପାଇବ ।

ସତ୍-ଚିନ୍ତାରେ ନିମଜ୍ଜିତ ଥାଅ, ସତ୍-କର୍ମ ତୁମର ସହାୟ ହେବ ଏବଂ ତୁମର ଚତୁର୍ଦ୍ଦିଗ ସତ୍ ହୋଇ ସବୁସମୟରେ ତୁମକୁ ରକ୍ଷା କରିବ ହିଁ କରିବ ।

* * *

ଧର୍ମକୁ ଜାଣିବା ମାନେହିଁ ବିଷୟର ମୂଳ କାରଣକୁ ଜାଣିବା ; ଆଉ ସେହି ଜାଣିବାହିଁ ଜ୍ଞାନ ।

ଏହି ମୂଳଆଡ଼କୁ ଅନୁରକ୍ତିହିଁ ଭକ୍ତି ; ଆଉ, ଭକ୍ତିର ତାରତମ୍ୟ ଅନୁସାରେ ହିଁ ଜ୍ଞାନର ମଧ୍ୟ ତାରତମ୍ୟ ହୁଏ । ଯେତିକି ଅନୁରକ୍ତିରେ ଯେତିକି ଜଣାଯାଏ, ଭକ୍ତି ଆଉ ଜ୍ଞାନ ମଧ୍ୟ ସେତିକି ହୁଏ ।

ତୁମେ ବିଷୟରେ ଯେତିକି ଆସକ୍ତ ହୁଅ, ବିଷୟ ସମ୍ବନ୍ଧରେ ତୁମର ଜ୍ଞାନ ମଧ୍ୟ ସେତିକି ହୁଏ ।

ଜୀବନର ଉଦ୍ଦେଶ୍ୟ ଅଭାବକୁ ଏକଦମ୍ ତଡ଼ିଦେବା, ଆଉ ତାହା କେବଳ କାରଣକୁ ଜାଣିଲେହିଁ ହୋଇପାରେ ।

ଅଭାବରେ ପରିଶ୍ରାନ୍ତ ମନହିଁ ଧର୍ମ ବା ବ୍ରହ୍ମଜିଜ୍ଞାସା କରେ, ନତୁବା କରେନା ।

କେଉଁଥିରେ ଅଭାବ ଯାଏ, ଆଉ ତାହା କିପରି— ଏହି ଚିନ୍ତାରେ ହିଁ ପରିଶେଷରେ ବ୍ରହ୍ମଜିଜ୍ଞାସା ଆସେ ।

ଯାହା ଉପରେ ବିଷୟର ଅସ୍ତିତ୍ୱ ତାହାହିଁ ଧର୍ମ ; ଯେ ପର୍ଯ୍ୟନ୍ତ ତାହା ଜଣାଯାଇ ନାହିଁ, ସେ ପର୍ଯ୍ୟନ୍ତ ବିଷୟକୁ ଠିକ୍ ଠିକ୍ ଜଣା ହୋଇନାହିଁ ।

* * *

ଯେଉଁଭାବ ବିରୁଦ୍ଧ ଭାବ ଦ୍ୱାରା ଆହତ ବା ଅଭିଭୂତ ହୁଏନା ତାହାହିଁ ବିଶ୍ୱାସ ।

ବିଶ୍ୱାସ ନ ଥିଲେ ଦର୍ଶନ ହେବ କିପରି ?

କର୍ମ ବିଶ୍ୱାସକୁ ଅନୁସରଣ କରେ, ଯେପରି ବିଶ୍ୱାସ, କର୍ମ ମଧ୍ୟ ସେହିପରି ହୁଏ ।

ଗଭୀର ବିଶ୍ୱାସରେ ସବୁକିଛି ହୋଇପାରେ । ବିଶ୍ୱାସ କର,— ସାବଧାନ, ଅହଙ୍କାର, ଅଧୈର୍ଯ୍ୟ ଓ ବିରକ୍ତି ନ ଆସେ—ଯାହାଗ୍ରହ ତାହାହିଁ ହେବ ।

ବିଶ୍ୱାସ ହିଁ ବିସ୍ତାର ଓ ଚୈତନ୍ୟ ଆଣିଦେଇପାରେ, ଆଉ ଅବିଶ୍ୱାସ ଜଡ଼ତ୍ୱ, ଅବସାଦ, ସଂକୀର୍ଣ୍ଣତା ଆଣିଥାଏ ।

ବିଶ୍ୱାସ ଯୁକ୍ତିତର୍କର ବାହାରେ, ଯଦି ବିଶ୍ୱାସ କର, ଯେତେ ଯୁକ୍ତିତର୍କ ତୁମର ସମର୍ଥନ କରିବ ହିଁ କରିବ ।

ତୁମେ ଯେପରି ଭାବରେ ବିଶ୍ୱାସ କରିବ, ଯୁକ୍ତିତର୍କ ତୁମକୁ ସେହିପରି ସମର୍ଥନ କରିବ ।

* * *

ଭାବରେ ହିଁ ବିଶ୍ୱାସର ପ୍ରତିଷ୍ଠା । ଯୁକ୍ତିତର୍କ ବିଶ୍ୱାସକୁ ଆଣିଦେଇ ପାରେ ନାହିଁ । ଭାବ ଯେତେ ପତଳା, ବିଶ୍ୱାସ ସେତେ ପତଳା, ନିଷ୍ଠା ସେତେ କମ୍ ।

ବିଶ୍ୱାସ ବୁଦ୍ଧିର ଗଣ୍ଡିର ବାହାରେ ; ବିଶ୍ୱାସ

ଅନୁଯାୟୀ ବୁଦ୍ଧି ହୁଏ । ବୁଦ୍ଧିରେ ହଁ-ନାହିଁ ଅଛି, ସଂଶୟ ଅଛି ; ବିଶ୍ୱାସରେ ହଁ-ନାହିଁ ନାହିଁ, ସଂଶୟ ନାହିଁ ।

* * *

ଯାହାର ବିଶ୍ୱାସ ଯେତେ କମ୍ ସେ ସେତେ **undeveloped,†** ତାର ବୁଦ୍ଧି ସେତେ କମ୍ ତୀକ୍ଷ୍ଣ ।

ତୁମେ ପଣ୍ଡିତ ହୋଇପାର, କିନ୍ତୁ ଯଦି ଅବିଶ୍ୱାସୀ ହୁଅ, ତେବେ ତୁମେ କଳଗାଉଣା ରେକର୍ଡ଼ କିମ୍ବା ଭାଷାବାହୀ ବଳଦ ପରି ନିଶ୍ଚୟ ।

ଯାହାର ପକ୍କା ବିଶ୍ୱାସ ନାହିଁ, ତାହାର ଅନୁଭୂତି ନାହିଁ; ଆଉ, ଯାହାର ଅନୁଭୂତି ନାହିଁ, ସେ ପୁଣି ପଣ୍ଡିତ କିପରି ?

ଯାହାର ଅନୁଭୂତି ଯେତିକି, ତା'ର ଦର୍ଶନ, ଜ୍ଞାନ ସେତିକି ; ଆଉ ଜ୍ଞାନରେ ହିଁ ବିଶ୍ୱାସର ଦୃଢ଼ତା ।

ଯଦି ବିଶ୍ୱାସ ନ କର, ତୁମର ଦେଖା ମଧ୍ୟ

---

† କଞ୍ଚା

ହୁଏନାହିଁ, ଅନୁଭବ କରିବା ମଧ୍ୟ ହୁଏ ନାହିଁ । ପୁଣି, ଏହି ଦେଖା ଓ ଅନୁଭବ କରିବା ବିଶ୍ୱାସକୁହିଁ ପକ୍କା କରିଦିଏ ।

* * *

ଯେପରି ଆଦର୍ଶରେ ତୁମେ ବିଶ୍ୱାସ ସ୍ଥାପନ କରିବ, ତୁମର ସ୍ୱଭାବ ମଧ୍ୟ ସେହିଭାବରେ ଗଠିତ ହେବ, ଆଉ ତୁମର ଦର୍ଶନ ମଧ୍ୟ ତଦ୍ରୂପ ହେବ ।

ବିଶ୍ୱାସୀକୁ ଅନୁସରଣ କର, ଭଲ ପାଅ, ତୁମର ମଧ୍ୟ ବିଶ୍ୱାସ ଆସିବ ।

ମୋର ବିଶ୍ୱାସ ନାହିଁ—ଏହି ଭାବର ଅନୁସରଣରେ ମଣିଷ ହୀନବିଶ୍ୱାସ ହୋଇପଡ଼େ ।

ବିଶ୍ୱାସ ନାହିଁ ଏଭଳି ମଣିଷ ନାହିଁ । ଯାହାର ବିଶ୍ୱାସ ଯେତେ ଗଭୀର, ଯେତେ ଉଚ୍ଚ, ତାହାର ମନ ସେତେ ଉଚ୍ଚ, ଜୀବନ ସେତେ ଗଭୀର ।

ଯେ ସତ୍‌ରେ ବିଶ୍ୱାସୀ ସେ ସତ୍ ହେବହିଁ, ଆଉ, ଅସତ୍‌ରେ ବିଶ୍ୱାସୀ ଅସତ୍ ହୋଇପଡ଼େ ।

* * *

ବିଶ୍ୱାସ ବିରୁଦ୍ଧ ଭାବଦ୍ୱାରା ଆକ୍ରାନ୍ତ ହେଲେହିଁ ସନ୍ଦେହ ଆସେ ।

ବିଶ୍ୱାସ ସନ୍ଦେହ-ଦ୍ୱାରା ଅଭିଭୂତ ହେଲେ ମନ ଯେତେବେଳେ ତାହା ସମର୍ଥନ କରେ ସେତେବେଳେହିଁ ଅବସାଦ ଆସେ ।

ପ୍ରତିକୂଳ ଯୁକ୍ତି ତ୍ୟାଗ କରି ବିଶ୍ୱାସର ଅନୁକୂଳ ଯୁକ୍ତି ଶ୍ରବଣ ଓ ମନନରେ ସନ୍ଦେହ ଦୂରୀଭୂତ ହୁଏ, ଅବସାଦ ରହେ ନାହିଁ ।

ବିଶ୍ୱାସ ପାଚିଗଲେ କୌଣସି ବିରୁଦ୍ଧ ଭାବହିଁ ତାକୁ ଟଳାଇ ପାରେନାହିଁ ।

ପ୍ରକୃତ ବିଶ୍ୱାସୀର ସନ୍ଦେହ ବା କ'ଣ କରିବ, ଅବସାଦ ବା କ'ଣ କରିବ ?

ସନ୍ଦେହକୁ ପ୍ରଶ୍ରୟ ଦେଲେ ସେ ଘୁଣପୋକ ପରି ମନକୁ ଆକ୍ରମଣ କରେ, ଶେଷରେ ଅବିଶ୍ୱାସରୂପକ ଜୀର୍ଣ୍ଣତାର ଚରମ ମଳିନ ଦଶା ପ୍ରାପ୍ତ ହୁଏ ।

ସନ୍ଦେହର ନିରାକରଣ କରି ବିଶ୍ୱାସର ସ୍ଥାପନ କରିବାହିଁ ଜ୍ଞାନପ୍ରାପ୍ତି ।

ତୁମେ ଯଦି ପକ୍‌କା ବିଶ୍ୱାସୀ ହୁଅ, ବିଶ୍ୱାସ ଅନୁଯାୟୀ ଭାବ ଛଡ଼ା ଜଗତରେ କୌଣସି ବିରୁଦ୍ଧ ଭାବ, କୌଣସି ମନ୍ତ୍ର, କୌଣସି ଶକ୍ତି ତୁମକୁ ଅଭିଭୂତ ବା ଯାଦୁ କରିପାରିବ ନାହିଁ, ନିଶ୍ଚୟ ଜାଣ ।

ତୁମ ମନରୁ ଯେଉଁ ପରିମାଣରେ ବିଶ୍ୱାସ ହଟିଯିବ, ଜଗତ୍ ସେହି ପରିମାଣରେ ତୁମକୁ ସନ୍ଦେହ କରିବ ବା ଅବିଶ୍ୱାସ କରିବ, ଏବଂ ଦୁର୍ଦ୍ଦଶା ମଧ୍ୟ ତୁମକୁ ସେହି ପରିମାଣରେ ଆକ୍ରମଣ କରିବ, ଏହା ନିଶ୍ଚୟ ।

ଅବିଶ୍ୱାସ-କ୍ଷେତ୍ର ଦୁର୍ଦ୍ଦଶା ବା ଦୁର୍ଗତିର ରାଜତ୍ୱ ।

ବିଶ୍ୱାସ-କ୍ଷେତ୍ର ଅତ୍ୟନ୍ତ ଉର୍ବର । ସାବଧାନ୍, ଅବିଶ୍ୱାସ ରୂପକ ଅନାବନା **ଗଛରେ** ସନ୍ଦେହରୂପକ ଅଙ୍କୁର ଉଠିବା ଦେଖିଲେହିଁ ତତ୍‌କ୍ଷଣାତ୍ ତାହା ଉତ୍ପାଟନ କର, ନତୁବା ଭକ୍ତିରୂପକ ଅମୃତବୃକ୍ଷ ଗଜେଇ ପାରିବ ନାହିଁ ।

ଶ୍ରଦ୍ଧା ଓ ବିଶ୍ୱାସ ଦୁଇ ଭାଇ, ଗୋଟିଏ ଆସିଲେ ଅନ୍ୟଟି ବି ଆସେ ।

ସନ୍ଦେହର ନିରାକରଣ କର, ବିଶ୍ୱାସର ସିଂହାସନରେ ଭକ୍ତିକୁ ବସାଅ, ହୃଦୟରେ ଧର୍ମରାଜ୍ୟ ସଂସ୍ଥାପିତ ହେଉ ।

ସତ୍‌ରେ ନିରବଚ୍ଛିନ୍ନ ସଂଲଗ୍ନ ରହିବାର ଚେଷ୍ଟାକୁହିଁ ଭକ୍ତି କହନ୍ତି ।

ଭକ୍ତହିଁ ପ୍ରକୃତ ଜ୍ଞାନୀ, ଭକ୍ତିବିହୀନ ଜ୍ଞାନ ବାଚକ-ଜ୍ଞାନ ମାତ୍ର ।

ତୁମେ ସୋଽହଂହିଁ କୁହ ଆଉ ବ୍ରହ୍ମାସ୍ମିହିଁ କୁହ, କିନ୍ତୁ ଭକ୍ତି ଅବଲମ୍ବନ କର, ତେବେହିଁ ସେହି ଭାବ ତୁମକୁ ଅବଲମ୍ବନ କରିବ ; ନତୁବା କେଉଁଥିରେ କିଛି ହେବ ନାହିଁ ।

ବିଶ୍ୱାସ ଯେପରି, ଭକ୍ତି ସେହିପରି ଭାବରେ ଆସିବ ଏବଂ ଜ୍ଞାନ ମଧ୍ୟ ତଦନୁଯାୟୀ ।

ଆଗେ ନିରହଙ୍କାର ହେବାକୁ ଚେଷ୍ଟା କର, ପରେ

ସୋଽହଂ କୁହ, ନଚେତ୍ ସୋଽହଂ ତୁମକୁ ଆହୁରି ଅଧଃପତନକୁ ନେଇ ଯାଇପାରେ ।

ତୁମେ ଯଦି ସତ୍‌ଚିନ୍ତାରେ ସଂଯୁକ୍ତ ରହିବାକୁ ଚେଷ୍ଟାକର, ତୁମର ଚିନ୍ତା, ଆଗ୍ରହ, ବ୍ୟବହାର ଇତ୍ୟାଦି ଉଦାର ଏବଂ ସତ୍ୟ ହେଉଥିବ ; ଆଉ ସେହି ଲକ୍ଷଣଗୁଡ଼ିକ ହିଁ ଭକ୍ତର ।

ସଂକୀର୍ଣ୍ଣତାର ନିକଟକୁ ଗଲେ ମନ ସଂକୀର୍ଣ୍ଣ ହୋଇପଡ଼େ ଏବଂ ବିସ୍ତୃତିର ନିକଟକୁ ଗଲେ ମନ ବିସ୍ତୃତି ଲାଭ କରେ ; ସେହିପରି ଭକ୍ତ ନିକଟକୁ ଗଲେ ମନ ଉଦାର ହୁଏ ; ଆଉ ଯେତେ ଉଦାରତା ସେତେହିଁ ଶାନ୍ତି ।

* * *

ବିଷୟରେ ମନ ସଂଲଗ୍ନ ରହିବାକୁ ଆସକ୍ତି କହନ୍ତି, ଆଉ ସତ୍‌ରେ ସଂଲଗ୍ନ ରହିବାକୁ ଭକ୍ତି କହନ୍ତି ।

ପ୍ରେମ ଭକ୍ତିରହିଁ କ୍ରମୋନ୍ନତି । ଭକ୍ତିର ଗାଢ଼ତ୍ୱହିଁ ପ୍ରେମ । ଅହଙ୍କାର ଯେଉଁଠି ଯେତେ ପତଳା, ଭକ୍ତିର ସ୍ଥାନ ସେଠାରେ ସେତେ ବେଶୀ ।

ଭକ୍ତି ଭିନ୍ନ ସାଧନାରେ ସଫଳ ହେବାର ଉପାୟ କେଉଁଠି ? ଭକ୍ତିହିଁ ସିଦ୍ଧି ଆଣିଦେଇ ପାରେ ।

ବିଶ୍ୱାସ ଯେପରି ଅନ୍ଧ ହୁଏ ନାହିଁ, ଭକ୍ତି ମଧ୍ୟ ସେହିପରି ମୂଢ଼ା ହୁଏନାହିଁ ।

ଭକ୍ତିରେ କସ୍ମିନ୍‌କାଳେ କୌଣସି ପ୍ରକାର ଦୁର୍ବଳତା ନାହିଁ ।

କ୍ଲୀବତ୍ୱ, ଦୁର୍ବଳତା ଅନେକ ସମୟରେ ଭକ୍ତିର ଖୋଳପା ପିନ୍ଧି ଛିଡ଼ା ହୁଏ, ତା'ଠାରୁ ସାବଧାନ୍ ହୁଅ ।

* * *

ଟିକିଏ କାନ୍ଦିଲେ ବା ନୃତ୍ୟଗୀତାଦିରେ ଉତ୍ତେଜିତ ହୋଇ ଲମ୍ଫ-ଝମ୍ପାଦି କଲେହିଁ ଯେ ଭକ୍ତି ହେଲା, ତାହା ନୁହେଁ ; ସାମୟିକ ଭାବୋନ୍ମତ୍ତତାଦି ଭକ୍ତର ଲକ୍ଷଣ ନୁହେଁ । ଭକ୍ତର ଚରିତ୍ରରେ ପତଳା ଅହଙ୍କାରର ଚିହ୍ନ, ବିଶ୍ୱାସର ଚିହ୍ନ, ସତ୍‌ଚିନ୍ତାର ଚିହ୍ନ, ସତ୍‌ବ୍ୟବହାର ଚିହ୍ନ ଏବଂ ଉଦାରତା ଇତ୍ୟାଦିର ଚିହ୍ନ କିଛିନା କିଛି ରହିବହିଁ ରହିବ, ନତୁବା ଭକ୍ତି ଆସିନାହିଁ ।

ବିଶ୍ୱାସ ନ ଆସିଲେ ନିଷ୍ଠା ଆସେନାହିଁ, ଆଉ, ନିଷ୍ଠା ଛଡ଼ା ଭକ୍ତି ରହିପାରେ ନାହିଁ ।

ଦୁର୍ବଳ ଭାବୋନ୍ମତ୍ତତା ଅନେକ ସମୟରେ ଭକ୍ତି ପରି ଦେଖାଯାଏ, ସେଠାରେ ନିଷ୍ଠା ନାହିଁ, ଆଉ, ଭକ୍ତିର ଚରିତ୍ରଗତ ଲକ୍ଷଣ ମଧ୍ୟ ନାହିଁ ।

ଯାହାର ହୃଦୟରେ ଭକ୍ତି ଅଛି, ସେ ବୁଝିପାରେ ନା ଯେ, ସେ ଭକ୍ତ ; ଆଉ ଦୁର୍ବଳ, ନିଷ୍ଠାହୀନ, କେବଳ ଭାବପ୍ରବଣ, ଗାଢ଼-ଅହଂ-ଯୁକ୍ତ ହୃଦୟ ଭାବେ— ମୁଁ ଖୁବ୍ ଭକ୍ତ ।

ଅଶ୍ରୁ, ପୁଲକ, ସ୍ୱେଦ, କମ୍ପନ ହେଲେହିଁ, ଯେ ସେଠାରେ ଭକ୍ତି ଆସିଛି, ତା'ନୁହେଁ, ଭକ୍ତିର ଏହିଗୁଡ଼ିକ ସହିତ ତାହାର ସ୍ୱଧର୍ମ-ଚରିତ୍ରଗତ ଲକ୍ଷଣ ରହିବହିଁ ରହିବ ।

ଅଶ୍ରୁ, ପୁଲକ, ସ୍ୱେଦ, କମ୍ପନ ଇତ୍ୟାଦି ଭାବର ଲକ୍ଷଣ ; ତାହା ଅନେକ ପ୍ରକାରେ ହୋଇପାରେ ।

ଭକ୍ତିର ଚରିତ୍ରଗତ ଲକ୍ଷଣ ସହିତ ଯଦି ଏହି ଭାବର ଲକ୍ଷଣଗୁଡ଼ିକ ପ୍ରକାଶ ପାଏ, ତେବେହିଁ ତାହା ସାତ୍ତ୍ୱିକ ଭାବର ଲକ୍ଷଣ ।

* * *

ଜାଲ-ଭକ୍ତି ମୋଟା-ଅହଙ୍କାରଯୁକ୍ତ, ଅସଲଭକ୍ତି ଅହଙ୍କାରମୁକ୍ତ ଅର୍ଥାତ୍ ଖୁବ୍ ପତଳା ଅହଙ୍କାରଯୁକ୍ତ ।

ଜାଲ-ଭକ୍ତି ଯୁକ୍ତ ମଣିଷ ଉପଦେଶ ନେଇ ପାରେ ନାହିଁ, ଉପଦେଷ୍ଟା ରୂପେ ଉପଦେଶ ଦେଇପାରେ, ତେଣୁ କେହି ଉପଦେଶ ଦେଲେ ମୁହଁରେ ରାଗିବାର ଲକ୍ଷଣ, ବିରକ୍ତିର ଲକ୍ଷଣ, ସଙ୍ଗ ପରିହାରର ଚେଷ୍ଟା ଇତ୍ୟାଦି ଲକ୍ଷଣ ପ୍ରାୟ ସ୍ପଷ୍ଟ ପ୍ରକାଶ ପାଏ ।

ଅସଲ-ଭକ୍ତିଯୁକ୍ତ ମଣିଷ ଉପଦେଷ୍ଟାର ଆସନ ନେବାକୁ ଏକାବେଳକେ ନାରାଜ । ଯଦି ଉପଦେଶ ପାଏ, ତା'ମୁହଁରେ ଆନନ୍ଦର ଚିହ୍ନ ଫୁଟି ବାହାରେ ।

ଅବିଶ୍ୱାସୀ ଓ ବହୁନୈଷ୍ଠିକର ହୃଦୟରେ ଭକ୍ତି ଆସିପାରେ ନାହିଁ ।

ଭକ୍ତି ଏକପାଇଁ ବହୁକୁ ଭଲପାଏ, ଆଉ ଆସକ୍ତି ବହୁପାଇଁ ଏକକୁ ଭଲ ପାଏ ।

ଆସକ୍ତିରେ ସ୍ୱାର୍ଥ ଲାଗି ଆତ୍ମତୁଷ୍ଟି, ଆଉ ଭକ୍ତିରେ ପରାର୍ଥ ଲାଗି ଆତ୍ମତୁଷ୍ଟି ।

ଭକ୍ତିର ଅନୁରକ୍ତି ସତ୍‌ରେ ଆଉ ଆସକ୍ତିର ନିଶା ସ୍ୱାର୍ଥରେ, ଅହଂରେ ।

ଆସକ୍ତି କାମର ପତ୍ନୀ, ଆଉ ଭକ୍ତି ପ୍ରେମର ଛୋଟ ଭଉଣୀ ।

* * *

ଅନୁଭୂତି ଦ୍ୱାରା ଯାହା ଜଣାଯାଏ ତାହାହିଁ ଜ୍ଞାନ ।

ଜାଣିବାକୁହିଁ ବେଦ କହନ୍ତି, ଆଉ ବେଦ ଅଖଣ୍ଡ ।

ଯେ, ଯେତିକି ଜାଣେ ସେ ସେତିକି ବେଦବିତ୍ ।

ଜ୍ଞାନ ଧନ୍ଦାକୁ ଧ୍ୱଂସକରି ମଣିଷକୁ ପ୍ରକୃତ ଚକ୍ଷୁ ଦାନ କରେ ।

ଜ୍ଞାନ ବସ୍ତୁର ସ୍ୱରୂପକୁ ନିର୍ଦ୍ଦେଶ କରେ ; ଆଉ, ବସ୍ତୁର ଯେଉଁ-ଭାବ ଜାଣିଲେ ଜାଣିବା ବାକି ରହେ ନାହିଁ, ତାହାହିଁ ତାର ସ୍ୱରୂପ ।

ଭକ୍ତି ଚିତ୍ତକୁ ସତ୍‌ରେ ସଂଲଗ୍ନ କରିବାକୁ ଚେଷ୍ଟା କରେ, ଆଉ ତହିଁରୁ ଯେପରି ଉପଲବ୍ଧି ହୁଏ, ତାହାହିଁ ଜ୍ଞାନ ।

ଅଜ୍ଞାନତା ମଣିଷକୁ ଉଦ୍‌ବିଗ୍ନ କରେ, ଜ୍ଞାନ ମଣିଷକୁ ଶାନ୍ତ କରେ । ଅଜ୍ଞାନତା ହିଁ ଦୁଃଖର କାରଣ, ଆଉ ଜ୍ଞାନହିଁ ଆନନ୍ଦ ।

ତୁମେ ଯେତିକି ଜ୍ଞାନର ଅଧିକାରୀ ହେବ, ସେତିକି ଶାନ୍ତ ହେବ । ତୁମର ଜ୍ଞାନ ଯେପରି, ତୁମର ସ୍ୱଚ୍ଛନ୍ଦରେ ରହିବାର କ୍ଷମତା ମଧ୍ୟ ସେହିପରି ।

* * *

ଅହଙ୍କାର ଯେତେ ଘନ, ଅଜ୍ଞାନତା ସେତେ ବେଶୀ ; ଆଉ ଅହଂ ଯେତେ ପତଳା, ଜ୍ଞାନ ସେତେ ଉଜ୍ଜ୍ୱଳ ।

ସନ୍ଦେହ ଅବିଶ୍ୱାସର ଦୂତ । ଆଉ ଅବିଶ୍ୱାସହିଁ ଅଜ୍ଞାନତାର ଆଶ୍ରୟ ।

ସନ୍ଦେହ ଆସିଲେ ତତ୍‌କ୍ଷଣାତ୍ ତାହା ନିରାକରଣର ଚେଷ୍ଟା କର, ଆଉ ସତ୍‌ଚିନ୍ତାରେ ନିମଗ୍ନ ହୁଅ—ଜ୍ଞାନର ଅଧିକାରୀ ହେବ , ଆଉ, ଆନନ୍ଦ ପାଇବ ।

ଅସତ୍-ଚିନ୍ତାରେ କୁଜ୍ଞାନ ବା ଅଜ୍ଞାନ ବା ମୋହ ଜନ୍ମେ । ତାହା ପରିହାର କର, ଦୁଃଖରୁ ରକ୍ଷା ପାଇବ ।

ତୁମେ ଅସତ୍‌ରେ ଯେତିକି ଆସକ୍ତ ହେବ, ସେତିକି ସ୍ୱାର୍ଥବୁଦ୍ଧିସମ୍ପନ୍ନ ହେବ, ଆଉ ସେତିକି କୁଜ୍ଞାନ ବା ମୋହରେ ଆଚ୍ଛନ୍ନ ହୋଇ ପଡ଼ିବ ; ଆଉ ରୋଗ, ଶୋକ, ଦାରିଦ୍ର୍ୟ, ମୃତ୍ୟୁ ଇତ୍ୟାଦି ଯନ୍ତ୍ରଣା ତୁମ ଉପରେ ସେତିକି ଆଧିପତ୍ୟ କରିବ, ଏହା ନିଶ୍ଚୟ ।

* * *

ଅହଙ୍କାର ଆସକ୍ତି ଆଣିଦିଏ, ଆସକ୍ତି ଆଣିଦିଏ ସ୍ୱାର୍ଥବୁଦ୍ଧି, ସ୍ୱାର୍ଥବୁଦ୍ଧି ଆଣେ କାମ, କାମରୁହିଁ କ୍ରୋଧର ଉତ୍ପତ୍ତି, ଆଉ କ୍ରୋଧରୁହିଁ ଆସେ ହିଂସା ।

ଭକ୍ତି ଆଣିଦିଏ ଜ୍ଞାନ ; ଜ୍ଞାନଦ୍ୱାରାହିଁ ସର୍ବଭୂତରେ ଆତ୍ମବୋଧ ହୁଏ ; ସର୍ବଭୂତରେ ଆତ୍ମବୋଧ ହେଲେହିଁ ଆସେ ଅହିଂସା । ଆଉ, ଅହିଂସା ଠାରୁ ହିଁ ଆସେ ପ୍ରେମ । ତୁମେ ଯେଉଁ ପରିମାଣରେ ଯେ କୌଣସି ଗୋଟିକର ଅଧିକାରୀ ହେବ, ସେହି ପରିମାଣରେ ସବୁଗୁଡ଼ିକର ଅଧିକାରୀ ହେବ ।

* * *

ଅହଙ୍କାରରୁହିଁ ଆସକ୍ତି ଆସେ ; ଆସକ୍ତିରୁ ଅଜ୍ଞାନତା ଆସେ ; ଅଜ୍ଞାନତାହିଁ ଦୁଃଖ ।

ସନ୍ଦେହରୁହିଁ ଅବିଶ୍ୱାସ ଆସେ ; ଆଉ, ଅବିଶ୍ୱାସ-ହିଁ ଜଡ଼ତ୍ୱ ।

ଆଳସ୍ୟରୁ ମୂଢ଼ତା ଆସେ ; ଆଉ, ମୂଢ଼ତାହିଁ ଅଜ୍ଞାନତା ।

ବାଧାପ୍ରାପ୍ତ କାମହିଁ କ୍ରୋଧ ; ଆଉ କ୍ରୋଧ-ହିଁ ହିଂସାର ବନ୍ଧୁ ।

ସ୍ୱାର୍ଥବୁଦ୍ଧିର ଆତ୍ମତୁଷ୍ଟିର ଅଭିପ୍ରାୟହିଁ ଲୋଭ ; ଆଉ, ଏହି ଲୋଭହିଁ ଆସକ୍ତି । ଯେ ନିର୍ଲୋଭ, ସେହିଁ ଅନାସକ୍ତ ।

* * *

ସରଳ ସାଧୁତା ପରି ଆଉ ଚତୁରତା ନାହିଁ ;—ଯେ ଯେପରି ହେଉନା କାହିଁକି, ଏ ଫାନ୍ଦରେ ଧରା ପଡ଼ିବହିଁ ପଡ଼ିବ । **Honesty is the best policy.†**

ବିନୟ ପରି ସମ୍ମୋହନ କାରକ ଆଉ କିଛିହିଁନାହିଁ ।

ପ୍ରେମ ପରି ଆକର୍ଷଣକାରୀ ବା ଆଉ କିଏ ?

ବିଶ୍ୱାସ ପରି ଆଉ ସିଦ୍ଧି ନାହିଁ ।

ଜ୍ଞାନ ପରି ଆଉ ଦୃଷ୍ଟି ନାହିଁ ।

ଆନ୍ତରିକ ଦୀନତା ପରି ଅହଙ୍କାରକୁ ଜବତ୍ କରିବାର ଆଉ କିଛିହେଲେ ନାହିଁ ।

---

† ସରଳ ସାଧୁତାହିଁ ଚରମ କୌଶଳ ।

ସଦ୍‌ଗୁରୁଙ୍କର ଆଦେଶ ପାଳନ ପରି ଆଉ ମନ୍ତ୍ର କ'ଣ ଅଛି ?

ଚାଲ, ଆଗେଇ ଯାଅ, ରାସ୍ତା ଭାବି କ୍ଳାନ୍ତ ହୋଇପଡ଼ ନାହିଁ, ତା'ହେଲେ ଆଉ ଯିବା ହେବ ନାହିଁ ।

* * *

ଯେ ଆଗେ ଝାମ୍ପ ଦେଇଛି, ଆଗେ ପଥ ଦେଖାଇଛି, ସେ–ହିଁ ନେତା ; ନତୁବା କେବଳ କଥାରେ କି ନେତା ହୋଇ ହୁଏ ?

ଆଗେ ଅନ୍ୟପାଇଁ ଯଥାସର୍ବସ୍ୱ ଢ଼ାଳିଦିଅ, ଦଶଜଣଙ୍କ ପାଦରେ ମଥା ବିକ୍ରୟ କର, ଆଉ, କାହାରି ଦୋଷ ବୋଲି ଦୋଷ ଦେଖିବା ଭୁଲିଯାଅ, ସେବାରେ ଆତ୍ମହରା ହୁଅ, ତେବେ ନେତା, ତେବେ ଦେଶର ହୃଦୟ, ତେବେ ଦେଶର ରାଜା । ନତୁବା ସେ ସବୁ କେବଳ ମୁହେଁ ମୁହେଁ ହୁଏ ନାହିଁ ।

ଯଦି ନେତା ହେବାକୁ ଚାହ ତେବେ ନେତୃତ୍ୱର ଅହଙ୍କାର ତ୍ୟାଗ କର, ନିଜର ଗୁଣଗାନ ଛାଡ଼ି ଦିଅ,

ପରହିତରେ ଯଥାସର୍ବସ୍ୱ ପଣ କର, ଆଉ ଯାହା ମଙ୍ଗଳ ଓ ସତ୍ୟ ନିଜେ ତାହା କରି ଦେଖାଅ । ଆଉ, ସମସ୍ତଙ୍କୁ ପ୍ରେମର ସହିତ କୁହ ; ଦେଖିବ . ହଜାର ହଜାର ଲୋକ ତୁମକୁ ଅନୁସରଣ କରିବେ ।

* * *

ନିର୍ଭର କର, ଆଉ ସାହସର ସହିତ ଅଦମ୍ୟ ଉତ୍ସାହରେ କାର୍ଯ୍ୟ କରିଯାଅ, ଲକ୍ଷ୍ୟ ରଖ, ତୁମ ଯୋଗୁଁ ତୁମ ନିଜର ଓ ଅନ୍ୟର କୌଣସି ପ୍ରକାର ଅମଙ୍ଗଳ ନ ଆସେ । ଦେଖିବ ସୌଭାଗ୍ୟ-ଲକ୍ଷ୍ମୀ ତୁମ ଘରେ ବନ୍ଧା ଥିବେ ।

କଥାରେ ଅଛି, ''ବୀରଭୋଗ୍ୟା ବସୁନ୍ଧରା !'' ତା' ଠିକ୍ ; ବିଶ୍ୱାସ, ନିର୍ଭରତା ଆଉ ଆତ୍ମତ୍ୟାଗ- ଏହି ତିନୋଟି ହିଁ ବୀରତ୍ୱର ଲକ୍ଷଣ ।

* * *

ନାମ- ଯଶ ଆତ୍ମୋନ୍ନୟନର ଘୋର ଅନ୍ତରାୟ ।

ତୁମର ଟିକିଏ ଉନ୍ନତି ହେଲେହି ଦେଖିବ କେହି ତୁମକୁ ଠାକୁର ବନେଇ ବସିଛି, କେହି ମହାପୁରୁଷ କହୁଛି, କେହି ଅବତାର, କେହି ସଦ୍‌ଗୁରୁ ଇତ୍ୟାଦି କହୁଛି, ପୁଣି, କେହି ସଇତାନ୍, ବଦମାସ୍, କେହି ବ୍ୟବସାୟୀ ଇତ୍ୟାଦି ବି

କହୁଛି ; ସାବଧାନ, ତୁମେ ଏମାନଙ୍କ କାହାରି ଆଡ଼କୁ ନଜର ଦିଅନା । ତୁମ ପକ୍ଷରେ ଏମାନେ ସମସ୍ତେ ଭୂତ । ନଜର ଦେଲେହିଁ କାନ୍ଧରେ ଚଢ଼ି ବସିବେ, ତାହା ଛଡ଼ାଇବା ମଧ୍ୟ ମହା ମୁସ୍କିଲ୍ । ତୁମେ ତୁମପରି କାର୍ଯ୍ୟ କରିଯାଅ, ଯାହା ଇଚ୍ଛା ତାହା ହେଉ ।

ନାମ- ଯଶ ଇତ୍ୟାଦିର ଆଶାରେ ଯଦି ତୁମର ମନ ଭକ୍ତର ଆଚରଣ କରେ, ତା'ହେଲେ ତ ମନରେ କପଟତା ଲୁଚି ରହିଛି,-ତତ୍କ୍ଷଣାତ୍ ତାକୁ ମାରି ବାହାର କରିଦିଅ । ତେବେହିଁ ମଙ୍ଗଳ, ନତୁବା ସବୁହିଁ ପଣ୍ଡ ହେବ ।

ଠାକୁର, ଅବତାର କିମ୍ବା ଭଗବାନ ଇତ୍ୟାଦି ହେବାର ସାଧ ହେଲେହିଁ ତୁମେ ନିଶ୍ଚୟ ଭଣ୍ଡ ହୋଇ ପଡ଼ିବ, ଆଉ ସେଥିରେ ମୁହଁରେ ହଜାର କହିଲେ ମଧ୍ୟ କାର୍ଯ୍ୟରେ କିଛି କରି ପାରିବ ନାହିଁ । ଯଦି ସେପରି ଇଚ୍ଛା ରହିଥାଏ, ତେବେ ଏହିକ୍ଷଣି ତ୍ୟାଗ କର, ନତୁବା ଅମଙ୍ଗଳ ନିଶ୍ଚୟ ।

* * *

ତୁମେ ଯେପରି ପ୍ରକୃତ ହେବ, ପ୍ରକୃତି ତୁମକୁ ସେହିପରି ଉପାଧି ନିଶ୍ଚୟ ଦେବେ ଏବଂ ନିଜ ଭିତରେ ସେହିପରି ଅଧିକାର ମଧ୍ୟ ଦେବେ ; ଏହା ନିତ୍ୟ ପ୍ରତ୍ୟକ୍ଷ କରୁଛ ; ତେବେ ଆଉ ଗୃହିବ କ'ଣ ? ପ୍ରାଣପଣେ ପ୍ରକୃତ ହେବାକୁ ଚେଷ୍ଟା କର। ପଢ଼ି ପାଶ୍ ନ କଲେ କ'ଣ ୟୁନିଭର୍ସିଟି କାହାକୁ ଉପାଧି ଦେଇଥାଏ ?

ଭୁଲ୍‌ରେ ବି ନିଜକୁ ପ୍ରଗ୍ୱର କରିବାକୁ ଯାଅନାହିଁ ବା ନିଜକୁ ପ୍ରଗ୍ୱର କରିବାକୁ କାହାକୁ ଅନୁରୋଧ କରନାହିଁ- ତା'ହେଲେ ସମସ୍ତେ ତୁମକୁ ଘୃଣା କରିବେ ଆଉ ତୁମଠାରୁ ଦୂରେଇ ଯିବେ।

ତୁମେ ଯଦି କୌଣସି ସତ୍ୟ ଜାଣିଥାଅ ଆଉ ତାହା ଯଦି ମଙ୍ଗଳପ୍ରଦ ବୋଲି ଜାଣ, ପ୍ରାଣପଣେ ତାହାରି ବିଷୟ କୁହ ଏବଂ ସମସ୍ତଙ୍କୁ ଜାଣିବାକୁ ଅନୁରୋଧ କର। ବୁଝିପାରିଲେ ସମସ୍ତେ ତୁମର କଥା ଶୁଣିବେ ଏବଂ ତୁମର ଅନୁସରଣ କରିବେ।

ତୁମେ ଯଦି ସତ୍ୟ ଦେଖିଥାଅ, ବୁଝିଥାଅ, ତେବେ ତୁମର କାୟମନୋବାକ୍ୟରେ ତାହା ଫୁଟି ବାହାରିବହିଁ

ବାହାରିବ । ତୁମେ ସେଥିରେ ହଜି ନ ଯିବା ପର୍ଯ୍ୟନ୍ତ କେବେହେଲେ ସ୍ଥିର ରହି ପାରିବ ନାହିଁ ; ସୂର୍ଯ୍ୟଙ୍କୁ କ'ଣ ଅନ୍ଧକାର ଢ଼ାଙ୍କି ରଖିପାରେ ?

* * *

ତୁମ ଭିତରେ ଯଦି ସତ୍ୟ ନ ଥାଏ, ତେବେ ହଜାର କୁହ, ହଜାର ବାହାନା କର, ହଜାର କାଇଦା ବି ଦେଖାଅ, ତୁମ ଚରିତ୍ରରେ, ତୁମ ମନରେ, ତୁମ ବାକ୍ୟରେ, ତାହାର ଜ୍ୟୋତି କେବେହେଲେ ଫୁଟିବ ନାହିଁ ; ସୂର୍ଯ୍ୟ ଯଦି ନଥାଏ, ତେବେ ବହୁ ଆଲୋକ ମଧ୍ୟ ଅନ୍ଧକାରକୁ ଏକଦମ୍ ତଡ଼ି ଦେଇପାରେ ନାହିଁ ।

ଯେ ସତ୍ୟ ପ୍ରଚାର କରିବାକୁ ଯାଇ ନିଜ ମହତ୍ତ୍ୱର ଗଳ୍ପ କରେ ଏବଂ ସବୁ ସମୟରେ ନିଜକୁହିଁ ନେଇ ବ୍ୟସ୍ତ, ଆଉ, ନାନା ରକମର କାଇଦା କରି ନିଜକୁ ସୁନ୍ଦର ଦେଖାଇବାକୁ ଚାହେ, ଯାହାର ପ୍ରତି ଅଙ୍ଗ ସଞ୍ଚାଳନରେ ଝଲକେ ଝଲକେ ଅହଙ୍କାର ଫୁଟି ବାହାରୁଛି, ଯାହାର ପ୍ରେମରେ ଅହଙ୍କାର, କଥାରେ ଅହଙ୍କାର, ଦୀନତାରେ

ଅହଙ୍କାର, ବିଶ୍ୱାସରେ, ଜ୍ଞାନରେ, ଭକ୍ତିରେ, ନିର୍ଭରତାରେ ଅହଙ୍କାର,-ସେ ହଜାର ପଣ୍ଡିତ ହେଉ, ଆଉ ସେ ଯେତେବି ଜ୍ଞାନ ଭକ୍ତିର କଥା କହୁନା କାହିଁକି, ନିଶ୍ଚୟ ଜାଣ ସେ ଭଣ୍ଡ ; ତା' ପାଖରୁ ବହୁଦୂରକୁ ହଟିଯାଅ ; ତା'କଥା ଶୁଣନାହିଁ ; କେବେହେଲେ ତା' ହୃଦୟରେ ସତ୍ୟ ନାହିଁ ; ମନରେ ସତ୍ୟ ନ ଥିଲେ ଭାବ କିପରି ଆସିବ ?

ପ୍ରଗ୍ୱରର ଅହଙ୍କାର ପ୍ରକୃତ-ପ୍ରଗ୍ୱରର ଅନ୍ତରାୟ । ସେ ହିଁ ପ୍ରକୃତ ପ୍ରଗ୍ୱରକ— ଯେ, ଆପଣା ମହତ୍ତ୍ୱର କଥା ଭୁଲ୍‌ରେ ମଧ୍ୟ ମୁହଁରେ ଧରେ ନାହିଁ, ଆଉ, ଶରୀର ଦ୍ୱାରା ସତ୍ୟର ଆଚରଣ କରେ, ମନରେ ସତ୍ୟଚିନ୍ତାରେ ମୁଗ୍‌ଧ ଥାଏ ଏବଂ ମୁହଁରେ ମନର ଭାବାନୁଯାୟୀ ସତ୍ୟର ବିଷୟ କୁହେ ।

ଯେଉଁଠି ଦେଖିବ, କେହି ବିଶ୍ୱାସର ଗର୍ବର ସହିତ ସତ୍ୟର ବିଷୟ କହୁଛି, ଦୟାର କଥା କହୁ କହୁ ଆନନ୍ଦରେ ଏବଂ ଦୀନତାରେ ଅଧୀର ହୋଇପଡୁଛି, ପ୍ରେମର ସହିତ ଆବେଗଭରେ ସମସ୍ତଙ୍କୁ ଡ଼ାକୁଛି, ଆଲିଙ୍ଗନ

କରୁଛି, ଆଉ ଯେଉଁ ମୁହୂର୍ତ୍ତରେ ତା'ର ମହତ୍ତ୍ୱର କଥା କେହି କହୁଛି, ତାହା ସ୍ୱୀକାର କରୁନାହିଁ ବରଂ ଦୀନ ଏବଂ ମ୍ଳାନ ହୋଇ ବୁକୁ ଫାଟିଲା ପରି ହୋଇପଡୁଛି— ଖୁବ୍ ହିଁ ଠିକ୍, ତା ପାଖରେ ଉଜ୍ଜ୍ୱଳ ସତ୍ୟ ଅଛି ହିଁ ଅଛି ; ଆଉ ତା'ର ସାଧାରଣ ଚରିତ୍ରରେ ମଧ୍ୟ ଦେଖିପାରିବ, ସତ୍ୟ ଫୁଟି ବାହାରୁଛି ।

ତୁମେ ଭକ୍ତି ରୂପକ ତେଲରେ ଜ୍ଞାନରୂପକ ବଳିତା ଭିଜାଇ ସତ୍ୟ ରୂପକ ଆଲୋକ ଜଳାଅ, ଦେଖିବ କେତେ ଝିଣ୍ଟିକା, କେତେ ପୋକ, କେତେ ଜାନୁଆର୍, କେତେ ମଣିଷ ତୁମକୁ କିପରି ଘେରି ଧରିଛନ୍ତି ।

ଯେ ସତ୍‌କୁହିଁ ଚିନ୍ତା କରେ, ସତ୍‌କୁହିଁ ଯାଜନ କରେ, ଯେ ସତ୍ୟରହିଁ ଭକ୍ତ, ସେ-ହିଁ ପ୍ରକୃତ ପ୍ରଗ୍ୱରକ ।

ଆଦର୍ଶରେ ଗଭୀର ବିଶ୍ୱାସ ନ ଥିଲେ ନିଷ୍ଠା ମଧ୍ୟ ଆସେ ନାହିଁ, ଭକ୍ତି ମଧ୍ୟ ଆସେ ନାହିଁ ; ଆଉ ଭକ୍ତି ନ ହେଲେ ଅନୁଭୂତି ବା କ'ଣ ହେବ, ଜ୍ଞାନ ବା କ'ଣ ହେବ ଆଉ ସେ ପ୍ରଗ୍ୱର ବା କରିବ କ'ଣ ?

ପ୍ରକୃତ ସତ୍ୟପ୍ରଗ୍ଚରକର ଅହଙ୍କାର ତା'ର ଆଦର୍ଶରେ ; ଆଉ, ଭଣ୍ଡ ପ୍ରଗ୍ଚରକର **ଅହଙ୍କାର** ଆତ୍ମପ୍ରଗ୍ଚରରେ ।

ଯାହା ମଙ୍ଗଳ ବୋଲି ଜାଣିବ, ଯାହା ସତ୍ୟ ବୋଲି ଜାଣିବ, ମଣିଷକୁ କହିବା ପାଇଁ **ହୃଦୟ ଫାଟିଲା ପରି ହୋଇ ଉଠିବ,** ମଣିଷ ତୁମକୁ ଯାହା କହୁନା କାହିଁକି ମନରେ କିଛି ହେବନାହିଁ; କିନ୍ତୁ ମଣିଷକୁ ସତ୍ୟମୁଖୀ ଦେଖିଲେ ଆନନ୍ଦ ହେବ,— ତେବେହିଁ ତାକୁ ପ୍ରଗ୍ଚର କୁହାଯିବ ।

ଠିକ୍ ଠିକ୍ ବିଶ୍ୱାସ, ନିର୍ଭରତା ଓ ଭକ୍ତି ନ ଥିଲେ ସେ କେବେହେଲେ ପ୍ରଗ୍ଚରକ ହୋଇ ପାରେନା ।

* * *

ଯେ ନିଜକୁ ପ୍ରଗ୍ଚର କରେ; ସେ ଆତ୍ମପ୍ରବଞ୍ଚନା କରେ ; ଆଉ, ଯେ ସତ୍ୟ ବା ଆଦର୍ଶରେ ମୁଗ୍ଧ ହୋଇ ତା'ବିଷୟରେ କୁହେ ସେ କିନ୍ତୁ ଠିକ୍ ଠିକ୍ ଆତ୍ମପ୍ରଗ୍ଚର କରେ ।

ପ୍ରକୃତ ସତ୍ୟ-ପ୍ରସ୍ପରକହିଁ ଜଗତର ପ୍ରକୃତ ମଙ୍ଗଳାକାଂକ୍ଷୀ। ତା'ର ଦୟାରେ କେତେ ଜୀବର ଯେ, **ଆତ୍ମୋନ୍ନୟନ ହୁଏ**, ତା'ର ଇୟତ୍ତା ନାହିଁ।

ତୁମେ ସତ୍ୟରେ ବା ଆଦର୍ଶରେ ମୁଗ୍ଧ ରୁହ, ହୃଦୟରେ ଭାବ ଆପଣାଛାଏଁ ଉଛୁଳି ଉଠିବ, ଆଉ ସେହି ଭାବରେ ଅନୁପ୍ରାଣିତ ହୋଇ କେତେ ଲୋକଙ୍କର ଯେ ଉନ୍ନତି ହେବ, ତା'ର କିନାରା ନାହିଁ।

ଗୁରୁ ହେବାକୁ ଗ୍ରହ ନାହିଁ। ଗୁରୁମୁଖ ହେବାକୁ ଚେଷ୍ଟାକର ; ଆଉ ଗୁରୁମୁଖ ହିଁ ଜୀବର ପ୍ରକୃତ ଉଦ୍ଧାର—କର୍ତ୍ତା।

* * *

ଦେହ ଥିବାଯାଏ ଅହଙ୍କାର ଯାଏ ନାହିଁ, ଆଉ ଭାବ ଥିବାଯାଏ ଅହଂ ମଧ୍ୟ ଯାଏ ନାହିଁ। ତେବେ ନିଜର ଅହଂ ଆଦର୍ଶର ଉପର ଦେଇ, **passive** ହୋଇ ଯେ ଯେତେ ରହିପାରେ, ସେ ସେତେ ନିରହଙ୍କାର ଏବଂ ସେ ସେତେ ଉଦାର।

ନିଜର ଗର୍ବ ଯେତେ ନ କରାଯାଏ ତେତେହିଁ ମଙ୍ଗଳ, ଆଉ ଆଦର୍ଶର ଗର୍ବ ଯେତେ କରାଯାଏ ତେତେହିଁ ମଙ୍ଗଳ ।

ପରମପିତାହିଁ ତୁମର ଅହଙ୍କାରର ବିଷୟ ହୁଅନ୍ତୁ, ଆଉ ତୁମେ ତାଙ୍କୁହିଁ ନେଇ ଆନନ୍ଦ ଉପଭୋଗ କର ।

ଅସତ୍ ଆଦର୍ଶରେ ତୁମର ଅହଙ୍କାର ନ୍ୟସ୍ତ କରନାହିଁ ; ତା'ହେଲେ ତୁମର ଅହଙ୍କାର ଆହୁରି କଠିନ ହେବ ।

ଆଦର୍ଶ **ଯେତେ** ଉଚ୍ଚ ବା ଉଦାର ହୁଏ, ସେତେହିଁ ଭଲ ; କାରଣ, ଯେତେ ଉଚ୍ଚତା ବା ଉଦାରତାର ଆଶ୍ରୟ ନେବ, ତୁମେ ମଧ୍ୟ ସେତେ ଉଚ୍ଚ ଓ ଉଦାର ହେବ ।

***

ଯେତେବେଳେ ଦେଖିବ ମଣିଷ ତୁମକୁ ପ୍ରଣାମ କରୁଛି, ଆଉ ସେଥିରେ ତୁମର ବିଶେଷ କିଛି ଆପତ୍ତି ହେଉନାହିଁ, ମୌଖିକ ଥରେ- ଥରେ ଆପତ୍ତି କରୁଛ ସତ—

ମନରେ ବିଶେଷ ଗୋଟାଏ କିଛି ହେଉନାହିଁ— ସେତେ— ବେଳେହିଁ ଠିକ୍ ଜାଣିଥାଅ, ଅନ୍ତରରେ ଗ୍ଳେର ପରି ହାମ୍‌ବଡ଼ାଇ ପଶିଛି ; ତୁମେ ଯେତେଶୀଘ୍ର ପାର ସାବଧାନ୍ ହୁଅ, ନତୁବା ନିଶ୍ଚୟ ଅଧଃପାତେ ଯିବ ।

ଆଉ, ଯେତେବେଳେ କେହି ପ୍ରଣାମ କରିଲେହିଁ ସଙ୍ଗେ ସଙ୍ଗେ ଦୀନତାରେ ତୁମର ମଥା ନଇଁ ଯାଉଛି, ସେବା ନେବାକୁ ମନ ଆଦୌ ରାଜି ନୁହେଁ, ବରଂ ସେବା କରିବାକୁ ମନ ସବୁ ସମୟରେ ବ୍ୟସ୍ତ ରହୁଛି,— ଆଦର୍ଶର କଥା କହିଲେ ପ୍ରାଣରେ ଆନନ୍ଦ ବୋଧ ହେଉଛି— ତୁମର ଭୟ ନାହିଁ, ତୁମେ ମଙ୍ଗଳର କୋଳରେହିଁ ରହିଛ ; ଆଉ ନିୟତ ଆହୁରି ବେଶୀ ସେହିପରି ରହିବାକୁ ଚେଷ୍ଟାକର ।

* * *

ତୁମେ ଲତାର ସ୍ୱଭାବ ଅବଲମ୍ବନ କର, ଆଉ, ଆଦର୍ଶରୂପ ବୃକ୍ଷକୁ ଜଡାଇ ଧର— ସିଦ୍ଧକାମ ହେବ ।

ଯଦି ତୁମର ଆଦର୍ଶର କଥା କହିଲେ ଆନନ୍ଦ, ଶୁଣିଲେ ଆନନ୍ଦ, ତାଙ୍କର ଚିନ୍ତାରେ ଆନନ୍ଦ, ତାଙ୍କ ହୁକୁମ୍

ପାଇଲେ ଆନନ୍ଦ, ତାଙ୍କ ଆଦରରେ ଆନନ୍ଦ, ଅନାଦରରେ ମଧ୍ୟ ଆନନ୍ଦ ହୁଏ, ତାଙ୍କ ନାମରେ ହୃଦୟ ଉଛୁଳି ଉଠେ— ମୁଁ ନିଶ୍ଚୟ କହୁଛି ତୁମର ଉନ୍ନୟନ ପାଇଁ ଆଉ ଭାବିବାକୁ ହେବ ନାହିଁ ।

ସଦ୍‌ଗୁରୁଙ୍କର ଶରଣାପନ୍ନ ହୁଅ, ସତ୍-ନାମ ମନନ କର, ଆଉ ସତ୍‌ସଙ୍ଗର ଆଶ୍ରୟ ଗ୍ରହଣ କର— ମୁଁ ନିଶ୍ଚୟ କହୁଛି, ତୁମକୁ ଆଉ ତୁମର ଉନ୍ନୟନ ପାଇଁ ଭାବିବାକୁ ହେବନାହିଁ ।

ତୁମେ ଭକ୍ତିରୂପକ ଜଳ ତ୍ୟାଗକରି ଆସକ୍ତିରୂପକ ବାଲିଚଡ଼ାରେ ବହୁଦୂର ଯାଅନାହିଁ, ଦୁଃଖରୂପକ ସୂର୍ଯ୍ୟୋତ୍ତାପରେ ବାଲିଚଡ଼ା ଗରମ ହେଲେ ଫେରି ଆସିବା ମୁସ୍କିଲ୍ ହେବ ; ଅଳ୍ପ ଉତ୍ତପ୍ତ ହେଉ ହେଉ ଯଦି ଫେରି ନ ଆସି ପାର ତେବେ ଶୁଖି ମରିବାକୁ ହେବ ।

ଭାବମୁଖୀ ହୋଇ ରହିବାକୁ ଚେଷ୍ଟାକର, ପତିତ ହେବନାହିଁ ବରଂ ଅଗ୍ରସର ହେଉଥିବ ।

ଗୁରୁମୁଖୀ ହେବାକୁ ଚେଷ୍ଟାକର, ଆଉ ମନର ଅନୁସରଣ କରନାହିଁ - ଉନ୍ନତି ତୁମକୁ କୌଣସି ମତେ ତ୍ୟାଗ କରିବ ନାହିଁ ।

ବିବେକକୁ ଅବଲମ୍ବନ କର, ଆଉ ମନର ଅନୁସରଣ କରନାହିଁ— ଉଦାରତା ତୁମକୁ କେବେହେଲେ ତ୍ୟାଗ କରିବ ନାହିଁ ।

ସତ୍ୟକୁ ଆଶ୍ରୟ କର, ଆଉ ଅସତ୍ୟର ଅନୁଗମନ କରନାହିଁ—ଶାନ୍ତି ତୁମକୁ କୌଣସି ମତେ ଛାଡ଼ି ରହିବ ନାହିଁ ।

ଦୀନତାକୁ ଅନ୍ତରରେ ସ୍ଥାନ ଦିଅ—ଅହଙ୍କାର ତୁମର କିଛି ବି କରିପାରିବ ନାହିଁ ।

ଯାହା ତ୍ୟାଗ କରିବାକୁ ହେବ, ତା'ଆଡ଼କୁ ଆକୃଷ୍ଟ ବା ଆସକ୍ତ ହୁଅନାହିଁ— ଦୁଃଖରୁ ରକ୍ଷାପାଇବ ।

* * *

ପ୍ରେମକୁ ପ୍ରାର୍ଥନା କର, ଆଉ ହିଂସାକୁ ଦୂରକୁ ପରିହାର କର, ଜଗତ ତୁମ ଆଡ଼କୁ ଆକୃଷ୍ଟ ହେବହିଁ ହେବ ।

ତୁମ ମନର ସନ୍ନ୍ୟାସ ହେଉ ; ସନ୍ୟାସୀ ସାଜି ମିଛାମିଛି ବହୁରୂପୀ ହୋଇ ବସନାହିଁ ।

ତୁମର ମନ ସତ୍‌ରେ ବା ବ୍ରହ୍ମରେ ବିଚରଣ କରୁ, କିନ୍ତୁ ଶରୀରକୁ ଗେରୁଆ ବା ବିଭିନ୍ନ ରଙ୍ଗରେ ସଜାଇବାରେ ବ୍ୟସ୍ତ ହୁଅନାହିଁ, ତା'ହେଲେ ମନ ଶରୀରମୁଖୀ ହୋଇ ପଡ଼ିବ ।

ଅହଙ୍କାର ତ୍ୟାଗ କର, ସତ୍‌ସ୍ୱରୂପରେ ଅବସ୍ଥାନ କରିପାରିବ ।

ପତିତକୁ ଉଦ୍ଧାରର କଥା ଶୁଣାଅ, ଆଶା ଦିଅ, ଛଳେ-ବଳେ-କୌଶଳେ ତା'ର ଉନ୍ନୟନରେ ସାହାଯ୍ୟ କର, ସାହସ ଦିଅ— କିନ୍ତୁ ଉଚ୍ଛୃଙ୍ଖଳ ହେବାକୁ ଦିଅନାହିଁ ।

ଯଦି କୌଣସି ଦିନ ତୁମର ପ୍ରେମାସ୍ପଦଙ୍କୁ ସର୍ବସ୍ୱ ବିକିଦେଇ ନିମଜ୍ଜିତ ହୋଇଥାଅ— ଆଉ ଭାସି ଉଠିବାର ଆଶଙ୍କା ଦେଖ, ତେବେ ଜୋର କରି ତତ୍କ୍ଷଣାତ୍ ନିମଜ୍ଜିତ ହୋଇ ବିଗତପ୍ରାଣ ହୁଅ— ଦେଖିବ ପ୍ରେମାସ୍ପଦ କେତେ ସୁନ୍ଦର, କିପରି ଭାବେ ତୁମକୁ ଆଲିଙ୍ଗନ କରିଅଛନ୍ତି ।

ଯଦି ଏତେ ଟିକିଏ ଲୋକନିନ୍ଦା, ଉପହାସ, ସ୍ୱଜନାନୁରକ୍ତି, ସ୍ୱାର୍ଥହାନି, ଅନାଦର, ଆତ୍ମ ବା ପରଗଞ୍ଜନା ତୁମର ପ୍ରେମାସ୍ପଦଙ୍କଠାରୁ ତୁମକୁ ଦୂରରେ ରଖିପାରେ, ତେବେ ତୁମର ପ୍ରେମ କେତେ କ୍ଷୀଣ— ତା' ନୁହେଁ କି ?

କୌଣସି କଥା 'ଆଜି ବୁଝିଛି ପୁଣି କାଲି ବୁଝାଯାଉ ନାହିଁ—ପ୍ରହେଳିକା' ଇତ୍ୟାଦି କହି ଶୃଗାଳ ସାଜ ନାହିଁ— କାରଣ ଇତର ଜନ୍ତୁମାନେ ମଧ୍ୟ ଯାହା ବୁଝନ୍ତି ତାହା ଭୁଲନ୍ତି ନାହିଁ । ତେଣୁ, ଏହି ପ୍ରକାର କହିବାଟାହିଁ ଦୁଷ୍ଟ ବା ଅସ୍ଥିର-ବୁଦ୍ଧିର ପରିଗ୍ରାହକ ।

ଆଜି ଉପକୃତ ହୋଇଛି କହି କାଲି ପୁଣି ସ୍ୱାର୍ଥାନ୍ଧ ହୋଇ ଅପକୃତ ହେବାର ବାହାନା କରି ଅକୃତଜ୍ଞତାକୁ ଡ଼ାକିଆଣ ନାହିଁ । ଏହାଠାରୁ ଇତରତା ଆଉ କ'ଣ ଅଛି ? ଯା'କୁ ତାକୁ ଜିଜ୍ଞାସା କର ।

ମୂର୍ଖତା ନ ଥିଲେ ଉପକୃତର କୁତ୍ସାରେ ଉପକାରୀକୁ ନିନ୍ଦିତ କରାଯାଏ ନାହିଁ ।

ଉପକାରୀ ଯେତେବେଳେ ଉପକୃତ ନିକଟରେ ବିଧ୍ୱସ୍ତ ହୁଏ, ସେତେବେଳେ ମୂଢ଼ ଅହଂ କୃତଜ୍ଞତା ରୂପକ ଅର୍ଗଳ ଭାଙ୍ଗି ଦମ୍ଭ-କଣ୍ଟକାକୀର୍ଣ୍ଣ ମୃତ୍ୟୁ ପଥ ଉନ୍ମୁକ୍ତ କରେ ।

ଆଶ୍ରିତର ନିନ୍ଦାରେ ଯିଏ ଆଶ୍ରୟକୁ କୁତ୍ସିତ ବିବେଚନା କରନ୍ତି— ବିଶ୍ୱାସଘାତକତା ତା'ର ପଶ୍ଚାତ୍ ଅନୁସରଣ କରେ ।

**ପ୍ରିୟଙ୍କ** ପ୍ରତି ଭଲପାଇବା ବା ମଙ୍ଗଳବିହୀନ କର୍ମ କେବେହେଲେ ପ୍ରେମର ପରିଚାୟକ ନୁହେଁ ।

ପ୍ରିୟତମଙ୍କ ପାଇଁ କିଛି କରିବାକୁ ଇଚ୍ଛା ହୁଏନାହିଁ—, ଅଥଚ ଖୁବ୍ ଭଲପାଏ—, ଏକଥା ବି ଯାହା, ଆଉ, ସୁନାର ପିତଳ ଘୁଘୁ କହିବା ମଧ୍ୟ ତାହା । ସ୍ୱାର୍ଥବୁଦ୍ଧି ହିଁ ପ୍ରାୟ ଉକ୍ତ ପ୍ରକାର ଭଲପାଏ, ତେଣୁ ସେହିପ୍ରକାର ନିଷ୍କାମ-ଧର୍ମାକ୍ରାନ୍ତ ଭଲପାଇବା ଦେଖି ସାବଧାନ୍ ହେବା ଭଲ, ନତୁବା ବିପଦର ସମ୍ଭାବନା ହିଁ ଅଧିକ ।

ଭଲପାଅ— ଅଥଚ ସେ ତୁମ ଉପରେ ଜୋର୍ ବା ଆଧିପତ୍ୟ, ଶାସନ, ଅପମାନ, ଅଭିମାନ, କିମ୍ବା ଜିଦ୍ କରିଲେହିଁ ସୁଖ ନ ହୋଇ ବରଂ ଓଲଟା ହୁଏ, ବା ମୂଳପୋଛ ହୋଇଯାଏ,— ମୁଁ କହୁଛି, ତୁମେ ଠକିଯିବ ଓ ଠକାଇବ ନିଶ୍ଚୟ— ଯେତେଦିନ ଯାଏ ତୁମେ ଏହିପରି ଥିବ,— ତେଣୁ ଏବେହୁଁ ସାବଧାନ୍ ହୁଅ ।

ପ୍ରେମର ମୋହ—ବାଧା ପାଇଲେହିଁ ବୃଦ୍ଧି, ପ୍ରେମାସ୍ପଦଙ୍କ ଅତ୍ୟାଗ୍ରହରେ ମଧ୍ୟ ଘୃଣା ଆସେନାହିଁ, ବିଚ୍ଛେଦରେ ସତେଜ ହୁଏ, ମଣିଷକୁ ମୂଢ଼ କରେ ନାହିଁ,

ଚିରଦିନ ଅତୃପ୍ତି, ଥରେ ସ୍ପର୍ଶ କଲେ ଆଉ ତ୍ୟାଗ ହୁଏ ନାହିଁ—ଅପରିବର୍ତ୍ତନୀୟ ।

କାମର ମୋହ—ବାଧାରେ କ୍ଷୀଣ, କାମର ଅତ୍ୟାଗ୍ରହରେ ବା ଯେପରି ଗ୍ରହିଦା ସେପରି ନ ପାଇଲେ ଘୃଣା, ବିଚ୍ଛେଦରେ ଭୁଲ୍, ମଣିଷକୁ କାପୁରୁଷ ଓ ମୂଢ଼ କରିପକାଏ, ଭୋଗରେହିଁ ତୃପ୍ତି ଓ ବିଷାଦ, ଚିରଦିନ ରହେନାହିଁ—ପରିବର୍ତ୍ତନୀୟ ।

ଗରୀୟାନ୍ ହୁଅ, କିନ୍ତୁ ଗର୍ବିତ ହୁଅନାହିଁ ।

ଯଦି ମୁଗ୍ଧ କରିବାକୁ ଗ୍ରହ, ତେବେ ନିଜେ ସମ୍ପୂର୍ଣ୍ଣଭାବେ ମୁଗ୍ଧ ହୁଅ ।

ଯଦି ସୁନ୍ଦର ହେବାକୁ ଇଚ୍ଛାଥାଏ ତେବେ ବିଶ୍ୱରେ ମଧ୍ୟ ସୁନ୍ଦର ଦେଖ ।

ଏକାନୁରକ୍ତି, ତୀବ୍ରତା ଓ କ୍ରମାଗତିରେହିଁ ଜୀବନର ସୌନ୍ଦର୍ଯ୍ୟ ଓ ସାର୍ଥକତା ।

ବହୁ ଭଲପାଇବା ଯେ ଏକ ଭଲପାଇବାକୁ ଟଳାଇ ବା ବିଚ୍ଛିନ୍ନ କରି ପାରେ ନାହିଁ, ସେହି ଭଲପାଇବାହିଁ ପ୍ରେମର ଭଗିନୀ ।

ଭଲମନ୍ଦ ବିଗ୍ଭର କରି ବିଧ୍ୱସ୍ତ ହେବା ଅପେକ୍ଷା ସତ୍‌ରେ (ଗୁରୁଙ୍କ ପ୍ରତି) ଆକୃଷ୍ଟ ହୁଅ, ନିର୍ବିଘ୍ନରେ ସଫଳ ହେବ ନିଶ୍‌ଚୟ ।

ଦୁର୍ବଳତା ସମୟରେ ସୁନ୍ଦର ଓ ସବଳତାର ଚିନ୍ତା କର, ଆଉ ଅହଙ୍କାରରେ ପ୍ରିୟ ଓ ଦୀନତାର ଚିନ୍ତା କର— ମାନସିକ ସ୍ୱାସ୍ଥ୍ୟ ଅକ୍ଷୁଣ୍ଣ ରହିବ ।

ଦୋଷ ଦେଖି ଦୁଷ୍ଟ ହୁଅନାହିଁ, ଆଉ ତୁମଠାରେ ସଂଲଗ୍ନ ସମସ୍ତଙ୍କୁ ଦୁଷ୍ଟ କରି ପକାଅ ନାହିଁ ।

ତାଙ୍କୁ ଦିଅ— ଗ୍ଭହ ନାହିଁ-ପାଇଲେ ଆନନ୍ଦିତ ହୁଅ ।

ତୁମେ ତାଙ୍କର ଇଚ୍ଛାଧୀନ ହୁଅ, ତାଙ୍କୁ ତୁମର ଇଚ୍ଛାଧୀନ କରିବାପାଇଁ ଚେଷ୍ଟା କର ନାହିଁ— କାରଣ, ତୁମ

ନିକଟରେ ସେ ହିଁ ସୁନ୍ଦର ।

ମିଳନର ଆକୁଳତାକୁ କଦାପି ତ୍ୟାଗ କର ନାହିଁ, ତା'ହେଲେ ବିରହର ବ୍ୟଥା ମଧୁର ହେବ ନାହିଁ—ଆଉ, ଦୁଃଖ ଭିତରେ ଶାନ୍ତିକୁ ଅନୁଭବ କରିପାରିବ ନାହିଁ ।

ଯା'ର ଉପରେ ତୁମର ଭାବିବା, କରିବା ଓ ବୋଧ ଯେତିକି ଓ ଯେପରି, ତା'ଉପରେ ତୁମର ଆସକ୍ତି, ଆକର୍ଷଣ, ବା ଭଲପାଇବା ସେତିକି ଓ ସେହିପରି ।

ଯାହାଙ୍କଠାରେ ସର୍ବସ୍ୱ ବିକି ଦେଇଛ—ସେ ହିଁ ତୁମର ଭଗବାନ, ଆଉ ସେ ହିଁ ତୁମର ପରମ୍ ଗୁରୁ ।

* * *

ଯେପରି କରି ଯାହା ପାଇବାକୁ ହୁଏ, ତାହା ନ କରି ସେଥିପାଇଁ ଦୁଃଖିତ ହୁଅନାହିଁ ।

କରିବା ଆଗରୁ ଦୁଃଖ କରିବା ନ ପାଇବାକୁ ହିଁ ଡ଼ାକି ଆଣେ ।

ପାଇବାକୁ ହେଲେହିଁ—ତା'ଯାହାବି ହେଉ, ଶୁଣିବାକୁ ହେବ ତାହା କିପରି ପାଇବାକୁ ହୁଏ— ଆଉ ଠିକ୍ ଠିକ୍ ତାହା କରିବାକୁ ହେବ— ନକରି ପାଇବା ପାଇଁ ଉଦ୍‌ଗ୍ରୀବ ହେବା ଅପେକ୍ଷା ବୋକାମି ଆଉ କ'ଣ ଅଛି ?

ନିଶ୍ଚୟ ଜାଣ— କରିବା ହିଁ ପାଇବାର ଜନନୀ ।

କରିବାଟା ଯେତେବେଳେ ଗ୍ରହିବାକୁ ଅନୁସରଣ କରେ— ତା'ର କୃତାର୍ଥତା ସେତେବେଳେ ସମ୍ମୁଖରେ ଛିଡ଼ାହୁଏ ।

ମଣିଷର ଆକାଂକ୍ଷିତ ମଙ୍ଗଳ ତାହାର **ଅଭ୍ୟସ୍ତ** ସଂସ୍କାରର ଅନ୍ତରାଳରେ ଥାଏ, ଆଉ ମଙ୍ଗଳଦାତା ସେତେବେଳେହିଁ ଦଣ୍ଡିତ ହୁଅନ୍ତି—ଯେତେବେଳେହିଁ **ପ୍ରଦତ୍ତ ମଙ୍ଗଳର** ଅଭ୍ୟସ୍ତ ସଂସ୍କାରର ସଙ୍ଗେ ବିରୋଧ ଉପସ୍ଥିତ ହୁଏ— ଆଉ ସେଥିଯୋଗୁଁ ପ୍ରେରିତପୁରୁଷ ସ୍ୱଦେଶରେ କୁତ୍ସାମଣ୍ଡିତ ହୁଅନ୍ତି ।

ପ୍ରକୃତି ସେହିମାନଙ୍କୁ ଧିକ୍କାର କରେ, ଯେଉଁମାନେ

ପ୍ରତ୍ୟକ୍ଷକୁ ଅବଜ୍ଞା ବା ଅଗ୍ରାହ୍ୟ କରି ପରୋକ୍ଷକୁ ଆଲିଙ୍ଗନ କରନ୍ତି ।

ଆଉ, ପରୋକ୍ଷ ଯାହାର ପ୍ରତ୍ୟକ୍ଷକୁ ରଞ୍ଜିତ ଓ ଲାଞ୍ଛିତ କରେ— ସେହିମାନେହିଁ ଫାଙ୍କିର ଅଧିକାରୀ ହୁଅନ୍ତି ।

* * *

ଯାହା ବୃଦ୍ଧିପ୍ରାପ୍ତ ହୋଇ ଯାହାକିଛି ହୋଇ ମଧ୍ୟ ତାହାହିଁ ରହିଛି— ତାହାହିଁ ବ୍ରହ୍ମ ।

ଜଗତର ସମସ୍ତ ଐଶ୍ୱର୍ଯ୍ୟ— ଜାଣିବା, ଭଲପାଇବା, ଓ କର୍ମ— ଯାହାଙ୍କ ଭିତରେ ସହଜ— ଉତ୍ସାରିତ, ଆଉ ଯାହାଙ୍କ ପ୍ରତି ଆସକ୍ତିରେ ମଣିଷର ବିଚ୍ଛିନ୍ନ ଜୀବନ ଓ ଜଗତର ସମସ୍ତ ବିରୋଧର ଚରମ ସମାଧାନ ଲାଭ ହୁଏ— ସେ ହିଁ ମଣିଷର ଭଗବାନ ।

ଭଗବାନଙ୍କୁ ଜାଣିବା ମାନେହିଁ ସମସ୍ତଟାକୁ ବୁଝିବା ବା ଜାଣିବା ।

ଯାହାଙ୍କର କୌଣସି ମୂର୍ତ୍ତ ଆଦର୍ଶରେ କର୍ମମୟ ଅଟୁଟ ଆସକ୍ତି—ସମୟ ବା ସୀମାକୁ ଅତିକ୍ରମ କରି ତାହାଙ୍କୁ ସହଜ

ଭାବରେ ଭଗବାନ କରି ତୋଳିଛି,— ଯାହାଙ୍କର କାବ୍ୟ, ଦର୍ଶନ ଓ ବିଜ୍ଞାନ ମନର ଭଲମନ୍ଦ ବିଚ୍ଛିନ୍ନ ସଂସ୍କାରଗୁଡ଼ିକୁ ଭେଦ କରି ସେହି ଆଦର୍ଶରେହିଁ ସାର୍ଥକ ହୋଇ ଉଠିଛି— ସେହିଁ ସଦ୍‌ଗୁରୁ ।

ଯାହାଙ୍କର ମନ ସତ୍ ବା ଏକାସକ୍ତିରେ ପୂର୍ଣ୍ଣ— ସେହିଁ ସତ୍ ବା ସତୀ ।

ଆଦର୍ଶରେ ମନ ସମ୍ୟକ୍ ପ୍ରକାରେ ନ୍ୟସ୍ତ କରିବାର ନାମ— ସନ୍ନ୍ୟାସ ।

କୌଣସି ବିଷୟରେ ମନ ସମ୍ୟକ୍ ଭାବରେ ଲାଗି ରହିବାର ନାମ ସମାଧି ।

ନାମ ମଣିଷକୁ ତୀକ୍ଷ୍ଣ କରେ, ଆଉ ଧ୍ୟାନ ମଣିଷକୁ ସ୍ଥିର ଓ ଗ୍ରହଣକ୍ଷମ କରେ ।

ଧ୍ୟାନ ମାନେହିଁ କୌଣସି କିଛି ଗୋଟିଏ ଚିନ୍ତା ନେଇ ଲାଗି ରହିବା । ଆଉ, ତାହାହିଁ ଆମ୍ଭେମାନେ ବୋଧ

କରିପାରୁ— ଯାହାକି ଆମମାନଙ୍କର ଲାଗି-ରହିବାରେ ବିକ୍ଷେପ ଆଣିଦିଏ, କିନ୍ତୁ ଭାଙ୍ଗି ଦେଇପାରେ ନାହିଁ ।

ବିରକ୍ତ ହେବା ମାନେହିଁ ବିକ୍ଷିପ୍ତ ହେବା ।

ତୀକ୍ଷ୍ଣ ହୁଅ, କିନ୍ତୁ ସ୍ଥିର ହୁଅ— ସମସ୍ତ ଅନୁଭବ କରିପାରିବ ।

କୌଣସି-କିଛିରେହିଁ ଯୁକ୍ତ ହେବା ବା ଏକମୁଖୀ ଆସକ୍ତିର ନାମହିଁ— ଯୋଗ ।

କୌଣସି- କିଛି ଦ୍ୱାରା ପ୍ରତିହତ ହେଲେ ଯାହା-ନିଜକୁ ପ୍ରତିଷ୍ଠିତ କରିବାକୁ ଚାହେ ତାହାହିଁ ଅହଂ **(Self)** । ଅହଂକୁ ଶକ୍ତ କରିବା ମାନେହିଁ ଅନ୍ୟକୁ ନ ଜାଣିବା ।

ବସ୍ତୁ-ବିଷୟକ ସମ୍ୟକ୍ ଦର୍ଶନ ଦ୍ୱାରା ତନ୍ମନନରେ ମନର ନିବୃତ୍ତି ଯେଉଁମାନଙ୍କର ହୋଇଛି— ସେହିମାନେହିଁ ଋଷି ।

ମନର ସର୍ବପ୍ରକାର ଗ୍ରନ୍ଥିର (ସଂସ୍କାରର) ସମାଧାନ ବା ମୋଚନ ହୋଇ ଏକ-ରେ ସାର୍ଥକ ହେବାହିଁ— ମୁକ୍ତି ।

ଯେ ଭାବ ଓ କର୍ମ ମଣିଷକୁ କାରଣମୁଖୀ କରିଦିଏ, — ତାହାହିଁ ଆଧ୍ୟାତ୍ମିକତା ।

ଯେ ତୁଳନା ଅନ୍ତର୍ନିହିତ କାରଣକୁ ଫୁଟାଇ ତୋଳେ — ତାହାହିଁ ପ୍ରକୃତ ବିଗ୍ୱର ।

କୌଣସି ବସ୍ତୁକୁ ଲକ୍ଷ୍ୟକରି ତାହାର ସ୍ୱରୂପ-ନିର୍ଦ୍ଦେଶକ ବିଶ୍ଳେଷଣ ହିଁ— ଯୁକ୍ତି ।

କୌଣସି କାର୍ଯ୍ୟକରି— ବିଘ୍ନର ଦ୍ୱାରା ତାହାର ଭଲମନ୍ଦ ଅନୁଭବ କରି ଯେଉଁ ତାପ ହେତୁ ମନ୍ଦ ପ୍ରତି ବିରତି ଆସେ— ତାହାହିଁ ଅନୁତାପ ।

ଯେଉଁଠାକୁ ଗମନ କରିଲେ ମନର ଗ୍ରନ୍ଥିର ମୋଚନ ବା ସମାଧାନ ହୁଏ— ତାହାହିଁ ତୀର୍ଥ ।

ଯାହା କରିଲେ ଅସ୍ତିତ୍ୱକୁ ରକ୍ଷା କରିହୁଏ— ତାହାହିଁ ପୁଣ୍ୟ ।

ଯାହା କରିଲେ ରକ୍ଷା ପାଇବାରୁ ପତିତ ହୁଏ ତାହାହିଁ — ପାପ ।

ଯାହାର ଅସ୍ତିତ୍ୱ ଅଛି ଏବଂ ତା'ର ବିକାଶ ଅଛି ତାହାହିଁ ସତ୍ୟ(**Real**) ।

ଯାହା ଧାରଣା କରିବାରେ ମନର ନିଜତ୍ୱ ଅକ୍ଷୁର୍ଣ୍ଣ ରହେ— ତାହାହିଁ ସସୀମ ।

ଯାହା ଧାରଣା କରିବାକୁ ଯାଇ ମନ ନିଜତ୍ୱ ହରାଇ ବସେ— ତାହାହିଁ ଅନନ୍ତ ବା ଅସୀମ ।

**ଶାନ୍ତି ! ଶାନ୍ତି ! ଶାନ୍ତି !**

